...ଭୂଷଣ ଦାସ୍ କର୍ତ୍ତୃକ ପ୍ରସ୍ତୁତ

# BAPTIST CATECHISM.



## ଡୁବ୍ଡ ମଣ୍ଡଳୀସଂକ୍ରାନ୍ତ ।

## ପ୍ରଶ୍ନୋତ୍ତର ।



CUTTACK:

PRINTED AT THE ORISSA MISSION PRESS.

1894.

# CATECHISM OF NONCONFORMITY.

# ପ୍ରଶ୍ନୋତ୍ତର ।

## ୧ ଅଧ୍ୟାୟ ।

### ଖ୍ରୀଷ୍ଟଧର୍ମସମ୍ବନ୍ଧୀୟ ବିଶ୍ୱାସ ଓ ବ୍ୟବହାରବିଷୟକ ନିୟମ ।

୧ ପ୍ରଶ୍ନ । ସତ୍ୟଧର୍ମ କି?

ଉତ୍ତର । ଆମ୍ଭେମାନେ ସର୍ବାନ୍ତଃକରଣ ଓ ସମସ୍ତ ଆତ୍ମା ସହିତ ସଦାପ୍ରଭୁ ପରମେଶ୍ୱରଙ୍କୁ ପ୍ରେମ ଓ ସେବା କରି ତାହାଙ୍କ ମାର୍ଗରେ ଗତାୟାତ କରିବାର । ଦ୍ୱି.ବି ୧୦ ; ୧୨ ।

୨ ପ୍ର । କିରୂପେ ପାପିଷ୍ଠ ମନୁଷ୍ୟ ପରମେଶ୍ୱରଙ୍କୁ ପ୍ରେମ ଓ ସେବା କରିପାରେ ?

ଉତ୍ତର । ଆମ୍ଭମାନଙ୍କ ପ୍ରତି ଦତ୍ତ ପବିତ୍ର-ଆତ୍ମାଙ୍କ ଦ୍ୱାରା ଆମ୍ଭମାନଙ୍କ ଅନ୍ତଃକରଣରେ ଈଶ୍ୱରଙ୍କ ପ୍ରେମ ବ୍ୟାପ୍ତ ହୁଏ, ଏବଂ ଅମର ପରମେଶ୍ୱରଙ୍କ ସେବାନିମିତ୍ତ ଖ୍ରୀଷ୍ଟଙ୍କ ରକ୍ତଦ୍ୱାରା ଆମ୍ଭମାନଙ୍କ ଅନ୍ତରକ ପୁରୁଷ ମୃତ୍ୟୁଜନକ କ୍ରିୟାରୁ ପରିଷ୍କୃତ ହୁଏ । ରୋ ୫ ; ୫ । ଏବ୍ରୀ ୯ ; ୧୪ ।

୩ ପ୍ର । ପରମେଶ୍ୱର କି ଆମ୍ଭମାନଙ୍କ ପ୍ରତି ଆପଣା ଇଚ୍ଛା ପ୍ରକାଶ କରିଅଛନ୍ତି ?

ଉତ୍ତର । ହଁ, ସର୍ବଶକ୍ତିମାନ୍ ସଦାପ୍ରଭୁ ପରମେଶ୍ୱର ସୃଷ୍ଟିର

ଉଦୟାଚଳଠାରୁ ଅସ୍ତାଚଳ ଯାଏ ସମସ୍ତ ପୃଥିବୀକି
ତାଙ୍କ କହୁଅଛନ୍ତି । ଗୀତ ୫୦ ; ୧ ।

୪ ପ୍ର । କାହାଦ୍ୱାରା ଓ କେଉଁ ସମୟରେ ପରମେଶ୍ୱର
କହୁଅଛନ୍ତି ?

ଉତ୍ତର । ସେ ପୂର୍ବକାଳରେ ପିତୃପୁରୁଷମାନଙ୍କ ନିକଟରେ
ଭବିଷ୍ୟଦ୍‌ବକ୍ତାମାନଙ୍କ ଦ୍ୱାରା କହିଥିଲେ, ଏବଂ ବର୍ତ୍ତମାନ
ସମୟରେ ଆପଣା ପୁତ୍ରଙ୍କ ଦ୍ୱାରା ଆମ୍ଭମାନଙ୍କ ନିକଟରେ
କହୁଅଛନ୍ତି । ଏବ୍ରୀ ୧ ; ୧-୨ ।

୫ ପ୍ର । ତାଙ୍କର ବିଜ୍ଞାପନକୁ କି ବୋଲାଯାଏ ?

ଉତ୍ତର । ପରମେଶ୍ୱରଙ୍କ ପ୍ରତ୍ୟାଦେଶ, ଏବ୍ରୀ ୫ ; ୧୨ ।
ପରମେଶ୍ୱରଙ୍କ ବାକ୍ୟ, ୨କର ୨ ; ୧୭ । ଶାସ୍ତ୍ର,
୨ପି ୧ ; ୨୦ । ଶାସ୍ତ୍ର ସକଳ, ୨ପି ୩ ; ୧୬ ।
ସତ୍ୟର ବାକ୍ୟମୟ ଗ୍ରନ୍ଥ, ଦାନି ୧୦ ; ୨୧ । ଧର୍ମଶାସ୍ତ୍ର
ସବୁ, ୨ତୀମ ୩ ; ୧୫ ।

୬ ପ୍ର । ସାଧାରଣତଃ ଆମ୍ଭେମାନେ ସେସମସ୍ତ ବିଷୟରେ
କିପରି କହୁଁ ?

ଉତ୍ତର । ପୁରାତନ ଓ ନୂତନ ନିୟମ ସମ୍ବନ୍ଧୀୟ ଶାସ୍ତ୍ର, ଅଥବା
"ବାଇବଲ", ଅର୍ଥାତ୍ "ପୁସ୍ତକ" କହୁଁ ।

୭ ପ୍ର । ତହିଁମଧ୍ୟରେ କି ଆମ୍ଭମାନଙ୍କ ପାରମାର୍ଥିକ ଜୀବନ ନିମିତ୍ତ
ସମସ୍ତ ପ୍ରୟୋଜନୀୟ ବିଷୟ ପ୍ରକାଶିତ ଅଛି ?

ଉତ୍ତର । ହଁ, ସକଳ ଧର୍ମଶାସ୍ତ୍ର ଆମ୍ଭମାନଙ୍କୁ ପରିତ୍ରାଣ ଜ୍ଞାନକ

ଜ୍ଞାନ ଦେବାନିମନ୍ତେ ସମର୍ଥ, ଏବଂ ସର୍ବତୋଭାବରେ ସମଗ୍ର ସତ୍କାର୍ଯ୍ୟ ନିମନ୍ତେ ଆମ୍ଭମାନଙ୍କୁ ସୁସଜ୍ଜିତ କରିବାକୁ ଯଥେଷ୍ଟ ଅଟଇ । ୨ତୀମ ୩; ୧୫-୧୭ ।

୮ ପ୍ର । କିପରି ପ୍ରତିଜଣ ସେସବୁର ଶିକ୍ଷା ଗ୍ରହଣ କରିବା ଉଚିତ?

ଉତ୍ତର । ମନର ସରଳତା ସହିତ ଭକ୍ତିଭାବରେ ପବିତ୍ର-ଆତ୍ମାଙ୍କ ଶିକ୍ଷା ଉପରେ ନିର୍ଭର କରିବାଦ୍ୱାରା, ମାଥି ୭; ୧-୪ । ୨୩ । ଲୂକ ୧୮; ୧୭ । ଯୋ ୧୬; ୧୩ । ୧ଯୋ ୨; ୧୨-୧୭ ।

୯ ପ୍ର । ଧର୍ମସମ୍ବନ୍ଧରେ ପ୍ରତ୍ୟେକ ମନୁଷ୍ୟର, ନିଜ ନିଜ ଅନ୍ତରର ବୋଧର କି ଅଧିକାର ?

ଉତ୍ତର । ଆପଣା ନିମନ୍ତେ ଧର୍ମଶାସ୍ତ୍ର ଆଲୋଚନା କରିବାର, ଏବଂ ଧର୍ମଶାସ୍ତ୍ର ଯେପରି ଶିକ୍ଷା ଦିଏ ବୋଲି ଆମ୍ଭେମାନେ ଆପଣା ବିବେକଦ୍ୱାରା ବିଚାର କରି, ତଦନୁସାରେ ବିଶ୍ୱାସ ଓ ଭଜନା କରିବାର ଅଧିକାର ଅଛି ।

୧୦ ପ୍ର । ଧର୍ମସମ୍ବନ୍ଧୀୟ ଅନ୍ତରିକ ବୋଧବିଷୟରେ ଧର୍ମଶାସ୍ତ୍ର କି ଶିକ୍ଷା ଦିଏ ?

ଉତ୍ତର । ସେସକଳ ଧର୍ମଶାସ୍ତ୍ର ପରମେଶ୍ୱରଙ୍କ ପ୍ରତି, ଓ ପ୍ରତିବାସି ମନୁଷ୍ୟପ୍ରତି, ପୁଣି ନିଜ ନିଜ ପ୍ରତି ଗୁରୁତର କର୍ତ୍ତବ୍ୟ କର୍ମ ସାଧନ କରିବାକୁ ଶିକ୍ଷା ଦିଏ । ଯଥା, ଖ୍ରୀଷ୍ଟ କହନ୍ତି,

"ଧର୍ମଶାସ୍ତ୍ର ଆଲୋଚନା କର ।" ଯୋ ୫; ୩୯ ।
"ତୁମ୍ଭେମାନେ ଧର୍ମଶାସ୍ତ୍ର ନ ଜାଣି ଭ୍ରାନ୍ତ ଅଛ ।"
ମାଥି ୨୨; ୨୯ । "ତୁମ୍ଭେମାନେ କାହିଁକି ଯଥା
ଉଚିତ ବିଚାର ନ କର?" ଲୂକ ୧୨; ୫୭ ।
ପୁନଶ୍ଚ "ଯେଉଁ କଥା ଆମ୍ଭେ କହିଅଛୁ, ଶେଷ ଦିନରେ
ସେହି କଥା ତାହାଙ୍କୁ ଦୋଷୀ କରିବ ।" ଯୋ ୧୨; ୪୮ ।

ବିରେୟା ନଗରସ୍ଥ ଲୋକମାନେ ପ୍ରେରିତମାନଙ୍କ ପ୍ରଚାରିତ ବାକ୍ୟ ସ୍ୱଚ୍ଛନ୍ଦରେ ଗ୍ରହଣ କରି ଧର୍ମଶାସ୍ତ୍ର ଆଲୋଚନା କରିବାରେ ସୁଶୀଳତା ପ୍ରକାଶ କରିବା ସକାଶୁ ସୁବିଖ୍ୟାତ ହୋଇଅଛନ୍ତି । ପ୍ରେ ୧୭; ୧୧ । ପାଉଲ କହନ୍ତି, "ପ୍ରତ୍ୟେକ ଜଣ ଆପଣାର ମନରେ ବିବେଚନା କରି ସୁସ୍ଥିର ହେଉ ।" ରୋ ୧୪; ୫ । "ସମସ୍ତ ବିଷୟ ପରୀକ୍ଷା କରି ଯାହା ଉତ୍ତମ, ତାହା ଧରି ରଖ ।" ୧ଥେ ୫; ୨୧ । ଯୋହନ କହନ୍ତି, "ହେ ପ୍ରିୟ ଭ୍ରାତୃଗଣ, ପ୍ରତ୍ୟେକ ଆତ୍ମାକୁ ବିଶ୍ୱାସ ନ କର, ମାତ୍ର ସେମାନେ ଈଶ୍ୱରଙ୍କ ଲୋକ କି ନାହିଁ, ପରୀକ୍ଷା କର ।" ୧ଯୋ ୪; ୧ ।

୧୧ ପ୍ର । ବର୍ତ୍ତମାନ କେଉଁମାନେ ଆପଣାମାନଙ୍କ ମଧ୍ୟରେ ଏହି ଅଧିକାର ଅଛି ବୋଲି ସ୍ପଷ୍ଟରୂପେ ପ୍ରକାଶ କରନ୍ତି ?

ଉତ୍ତର । ପ୍ରୋଟେଷ୍ଟାଣ୍ଟମାନେ, (Protestants) ଏହି ଶବ୍ଦରେ ରୋମୀୟ ପୋପମତ ଅସ୍ୱୀକାରକାରୀ ସର୍ବସାଧାରଣ ଖ୍ରୀଷ୍ଟିୟାନମାନେ ଅନ୍ତର୍ଗତ ଅଛନ୍ତି; ନନ୍‌କନ୍‌ଫର୍ମିଷ୍ଟମାନେ, (Nonconformists) ଏମାନେ

ଇଙ୍ଗ୍‌ଲଣ୍ଡ ମଣ୍ଡଳୀର (Church of England) ବ୍ୟବସ୍ଥା ପାଳିବାକୁ ଅସ୍ୱୀକାର କରନ୍ତି; ଆଉ ଡସେଣ୍ଟରମାନେ, (Dissenters) ସାଧାରଣତଃ ବାପ୍ଟିଷ୍ଟ ପ୍ରଭୃତି, ଏମାନେ ଇଙ୍ଗ୍‌ଲଣ୍ଡୀୟ ରାଜକୀୟ-ମଣ୍ଡଳୀର ନିୟମାଦି ଅସ୍ୱୀକାର କରନ୍ତି ।

୧୨ ପ୍ର । ଧର୍ମସଂକ୍ରାନ୍ତ ବିଷୟମାନଙ୍କରେ କୌଣସି ମଣ୍ଡଳୀର ଶିକ୍ଷା, କି ସଭା ଓ ରାଜସଭାର ନିଷ୍ପତ୍ତି, କିଅବା ରାଜାର ଓ ପୋପମାନଙ୍କ ଆଦେଶ, କି ଧର୍ମଶାସ୍ତ୍ର ବିରୁଦ୍ଧରେ ସଂସ୍ଥାପିତ ହୋଇ ପାରେ ?

ଉତ୍ତର ନା, ବ୍ୟବସ୍ଥା ଓ ସାକ୍ଷ୍ୟ କଥାର ଅନୁସନ୍ଧାନ କରିବା ଆମ୍ଭମାନଙ୍କର କର୍ତ୍ତବ୍ୟ । ଯେବେ କୌଣସି ମଣ୍ଡଳୀ ଓ ମତାବଲମ୍ବୀମାନେ ଶାସ୍ତ୍ରୀୟ କଥା ପ୍ରମାଣେ ନ କହନ୍ତି, ତେବେ ନିଶ୍ଚୟ ସେମାନଙ୍କଠାରେ ଦୀପ୍ତି ନାହିଁ । ଯିଶା ୮; ୨୦, ଦେଖ ।

୧୩ ପ୍ର । କି ଏରୂପ ଉପଦେଶ, ନିଷ୍ପତ୍ତି, ଓ ଆଜ୍ଞା ଧର୍ମଶାସ୍ତ୍ରର ସମକକ୍ଷ ଅଟଇ ?

ଉତ୍ତର । ନା, ସେମାନେ ମନୁଷ୍ୟମାନଙ୍କ କଳ୍ପିତ ବିଧିକି ଈଶ୍ୱରଙ୍କ ଆଜ୍ଞାପରି ଶିକ୍ଷା ଦେଇ ବ୍ୟର୍ଥରେ ଈଶ୍ୱରଙ୍କର ଭଜନା କରନ୍ତି । ମାଥି ୧୫; ୯ । ଯିଶା ୨୯; ୧୩ ।

୧୪ ପ୍ର ପୂର୍ବୋକ୍ତ କୌଣସି ଶିକ୍ଷା, ନିଷ୍ପତ୍ତିକଥା, କି ଆଜ୍ଞା, ଯାହା ଧର୍ମପୁସ୍ତକର ଅର୍ଥସ୍ୱରୂପ ପ୍ରକାଶ କରାଯାଏ,

ତାହା କି କୌଣସିରୂପେ ବିବେକ ଉପରେ ଅବଶ୍ୟ ରହି ପାରେ ?

ଉତ୍ତର । ନା, ଅମ୍ଭମାନଙ୍କର ଏକମାତ୍ର ଗୁରୁ ଖ୍ରୀଷ୍ଟ; ଏବଂ ଅମ୍ଭେସମସ୍ତେ ଭ୍ରାତୃଗଣ । ମାଥି ୨୩; ୮ । ରୋ ୧୪; ୪ ଦେଖ ।

୧୫ ପ୍ର । ତେବେ ତୁମ୍ଭେମାନେ ଧର୍ମଶାସ୍ତ୍ରକୁ କିପ୍ରକାର ମାନ ?

ଉତ୍ତର । ଅମ୍ଭମାନଙ୍କ ଜୀବନର ସ୍ୱର୍ଗୀୟ ବ୍ୟବସ୍ଥା, ସଦ୍ୟବହାର ଶିକ୍ଷାମଣି, ଏବଂ ବିଶ୍ୱାସ ଓ ଆଚାର ପଦ୍ଧତିର ଅଦ୍ୱିତୀୟ ବିଧାନ ବୋଲି ମାନୁ ।

---

୨ ଅଧ୍ୟାୟ ।

ଖ୍ରୀଷ୍ଟୀୟ ମଣ୍ଡଳୀର ସ୍ୱଭାବ ଓ ଗଠନ ।

୧ ପ୍ର । ଖ୍ରୀଷ୍ଟୀୟାନ ମଣ୍ଡଳୀ କି ?

ଉତ୍ତର । ଯେଉଁମାନେ ଆପଣାକୁ ଖ୍ରୀଷ୍ଟଙ୍କର ଶିଷ୍ୟ ବୋଲି ପ୍ରକାଶ କରନ୍ତି, ସେମାନଙ୍କ ସମ୍ପ୍ରଦାୟ ବା ସଭା ।

୨ ପ୍ର । କେଉଁ ଶାସ୍ତ୍ରାନୁସାରେ ମଣ୍ଡଳୀ ଶବ୍ଦର ଏହି ବ୍ୟାଖ୍ୟା ପ୍ରବଳ ?

ଉତ୍ତର । ନୂତନ ନିୟମର ଶାସ୍ତ୍ରାନୁସାରେ ।

୩ ପ୍ର । କି ଭାବରେ "ମଣ୍ଡଳୀ" ଶବ୍ଦ ନୂତନନିୟମରେ ବ୍ୟବହୃତ ହୋଇଅଛି ?

ଉତ୍ତର । ଦୁଇ ଭାବରେ, ଅର୍ଥାତ୍ (୧) ଯେ କୌଣସି ସ୍ଥାନରେ ଶିଷ୍ୟମାନଙ୍କର ସଭା; ଯଥା, "ସେମାନଙ୍କ ଗୃହସ୍ଥିତ ମଣ୍ଡଳୀ" (ଅକ୍ଲିଲା) ପ୍ରିସ୍କିଲାର ଗୃହ ।) ରୋମି ୧୬; ୫ । "ଆଣ୍ଟିୟୋକିସ୍ଥିତ ମଣ୍ଡଳୀ ।" ପ୍ରେ ୧୩; ୧ । "କରନ୍ଥୀୟ ମଣ୍ଡଳୀ ।" ୧ କର ୧; ୨ । "ଯିରୂଶାଲମସ୍ଥିତ ମଣ୍ଡଳୀ ।" ପ୍ରେ ୮; ୧ । 'ସ୍ମିର୍ଣ୍ଣାମଣ୍ଡଳୀ, ପ୍ରକା ୨; ୮ । (୨) ଖ୍ରୀଷ୍ଟଙ୍କଠାରେ ବିଶ୍ୱାସକାରୀ ଲୋକସମୂହ କହିଅଛନ୍ତି । ଯଥା, "ଈଶ୍ୱରଙ୍କ ମଣ୍ଡଳୀର କାହାର ବିଘ୍ନଜନକ ନ ହୁଅ ।" ୧ କର ୧୦; ୩୨ । "ମଣ୍ଡଳୀଦ୍ୱାରା ଈଶ୍ୱରଙ୍କ ବହୁବିଧ ଜ୍ଞାନ ପ୍ରକାଶିତ ହୋଇ ପାରିବ ।" ଏଫି ୫; ୨୫ । "ପ୍ରଥମଜାତମାନଙ୍କର ସାଧାରଣ ସଭା ଓ ମଣ୍ଡଳୀ ଏବ୍ରୀ ୧୨; ୨୩ ।

୪ ପ୍ର । କାହାଦ୍ୱାରା ମଣ୍ଡଳୀ ସ୍ଥାପିତ ହୋଇଥିଲା ?

ଉତ୍ତର । ପ୍ରଭୁ ଯୀଶୁ ଖ୍ରୀଷ୍ଟଙ୍କ ଦ୍ୱାରା । "ଏହି ପଥର ଉପରେ ଅମ୍ଭେ ଆପଣା ମଣ୍ଡଳୀ ନିର୍ମ୍ମାଣ କରିବା ।" ମାଥି ୧୬; ୧୮ ।

୫ ପ୍ର । କେଉଁମାନଙ୍କୁ ଯଥାର୍ଥରୂପେ ମଣ୍ଡଳୀସ୍ଥ ଲୋକ ବୋଲି-ଯାଏ ?

ଉତ୍ତର । ଯେଉଁମାନେ ଖ୍ରୀଷ୍ଟଙ୍କ ଦ୍ୱାରା ନିସ୍ତାରପ୍ରାପ୍ତ ଓ ପବିତ୍ରୀକୃତ ହୋଇ ମନୋଯୋଗପୂର୍ବକ ତାଙ୍କର ନିୟମ ଓ

ବାକ୍ୟ ପାଳନ କରନ୍ତୁ । ଯଥା, "ନିସ୍ତାରପ୍ରାପ୍ତ," ପ୍ରେ ୨; ୪୭ । "ଈଶ୍ୱରପ୍ରିୟ," ରୋ ୧; ୭ । "ଯୀଶୁ ଖ୍ରୀଷ୍ଟଙ୍କ ଦ୍ୱାରା ପବିତ୍ରୀକୃତ," ୧ କର ୧; ୧। "ଯୀଶୁ ଖ୍ରୀଷ୍ଟଙ୍କଠାରେ ବିଶ୍ୱାସକାରୀ", ଏଫି ୧; ୧। "ସାଧୁ ଓ ବିଶ୍ୱସ୍ତ ଭ୍ରାତୃଗଣ," କଲ ୧; ୨ ।

୭ ପ୍ର । ମଣ୍ଡଳୀ-ସ୍ଥାପନର ଅଭିପ୍ରାୟ କି ?

ଉତ୍ତର । ଈଶ୍ୱରଙ୍କ ପୁତ୍ରକନ୍ୟାମାନଙ୍କ ଅନ୍ତଃକରଣ ବଳିଷ୍ଠ କରିବା ଦ୍ୱାରା, ଓ ସେମାନଙ୍କ ମଧ୍ୟରେ ପବିତ୍ରାଚରଣ ଓ ଉପଦେଶ ସୁରକ୍ଷା କରିବା ଦ୍ୱାରା, ଏବଂ ଜଗତରେ ତ୍ରାଣକର୍ତ୍ତାଙ୍କ ରାଜ୍ୟ ବୃଦ୍ଧି କରିବା ଦ୍ୱାରା, ଈଶ୍ୱରଙ୍କ ମହିମା ପ୍ରକାଶ କରିବା ମଣ୍ଡଳୀ-ସ୍ଥାପନର ଅଭିପ୍ରାୟ ଅଟେ । ଏଫି ୩; ୨୧ । ୧ ଥେସ ୫; ୧୧ । ୧ କର ୧୪; ୨୬ । ୨ ଥେସ ୨; ୧୫ । ଏବ୍ରି ୧୦; ୨୪, ୨୫ । ପ୍ରେ ୯; ୩୧ ।

୭ ପ୍ର । କି କି ପ୍ରଧାନ ଉପାୟ ଦ୍ୱାରା ଏହି ବିଷୟ ସାଧିତ ହେବା ଉଚିତ ?

ଉତ୍ତର । ମଙ୍ଗଳସମାଚାର ଘୋଷଣା, ପରମେଶ୍ୱରଙ୍କ ପ୍ରକାଶିତ ଭଜନ, ଏବଂ ଖ୍ରୀଷ୍ଟୀୟ ନିୟମାବଳୀର ଉପଯୁକ୍ତ ଅନୁଷ୍ଠାନ, ଇତ୍ୟାଦି ଉପାୟ ଦ୍ୱାରା ।

୮ ପ୍ର । ଖ୍ରୀଷ୍ଟୀୟ ମଣ୍ଡଳୀର ହସ୍ତରେ କି କି କର୍ତ୍ତବ୍ୟକର୍ମ ନ୍ୟସ୍ତ ହୋଇଅଛି ?

ଉତ୍ତର ତ୍ରିତ୍ୱ ପଦାର୍ଥମାନଙ୍କୁ ମନେ ମତ କରିବା, ଲୋକମାନଙ୍କୁ ମଣ୍ଡଳୀରେ ଗ୍ରହଣ କରିବା, ସଂଶୋଧନ, ଓ ପ୍ରୟୋଜନାନୁସାରେ ସେମାନଙ୍କର ଶାସନ ଓ ମଣ୍ଡଳୀରୁ ବହିଷ୍କୃତ କରିବା, ଏବଂ ବସ୍ତ୍ରବାକ୍ୟସ୍ଥାଦ ପାଳିବା, ଓ ଈଶ୍ୱରଙ୍କ ବାକ୍ୟର ମୂଳତତ୍ତ୍ୱ-ଅନୁସାରେ ସ୍ୱକୀୟ ହିତାର୍ଥେ ବିଷୟ ଚଳାଇବାର, ଇତ୍ୟାଦ । (ଶାସ୍ତ୍ରସିଦ୍ଧ ପ୍ରମାଣ ନିମନ୍ତେ ନିମ୍ନଲିଖିତ ଅଧ୍ୟାୟ ସବୁ ଦେଖ ।)

୯ ପ୍ର ମଣ୍ଡଳୀସ୍ଥ ଲୋକମାନଙ୍କର ପରସ୍ପର କି ସମ୍ବନ୍ଧ ଅଛି?

ଉତ୍ତର ଭ୍ରାତୃତ୍ୱ ଏକତ ; ସେମାନେ ଭ୍ରାତୃଗଣ ଅଟନ୍ତି । ପ୍ରେ ୨; ୩ । ୧୫; ୨୩ । ୨୦; ୩୨ । ଇତ୍ୟାଦି । ଏହୂଦାର ରୋମୀ ୧୨; ୫ "ପ୍ରତ୍ୟେକ ଜଣ ଏକ ଅନ୍ୟେକର ଅଙ୍ଗପ୍ରତ୍ୟଙ୍ଗ ସ୍ୱରୂପ "

୧୦ ପ୍ର କାହା ଉପରେ ଏହି ଏକତା ଅବସ୍ଥାପିତ?

ଉତ୍ତର ଖ୍ରୀଷ୍ଟଙ୍କ ପ୍ରତି ସେମାନଙ୍କ ସାଧାରଣ ପାଇବାର୍ଥକ ସମ୍ବନ୍ଧ ଉପରେ । "ତୁମ୍ଭେ ସମସ୍ତେ ଖ୍ରୀଷ୍ଟ ଯୀଶୁରେ ଏକ ଅଟ ।" ଗାଲ ୩; ୨୮ । "ପ୍ରଭୁଙ୍କର ଆଶ୍ରିତ ଭ୍ରାତୃଗଣ ।" ଫିଲି ୧; ୧୪ ।

୧୧ ପ୍ର . ତେବେ କି ଖ୍ରୀଷ୍ଟଙ୍କ ମଣ୍ଡଳୀଗଣ ମଧ୍ୟରେ ବିଶେଷତ୍ୱ ନାହିଁ?

ଉତ୍ତର । ହାଁ, ମଣ୍ଡଳୀର ସେବା ନିମନ୍ତେ ଈଶ୍ୱରୀୟ ଦାନ ଓ

କ୍ଷମତାର ବିଶେଷତ୍ୱ ଅଛି। ରୋ ୧୨; ୬, ୭, ୮। ୧କର ୧୨; ୪, ୮-୩୧। ଏଫି ୪; ୭, ୧୧-୧୫।

୧୨ ପ୍ର। ମଣ୍ଡଳୀ ଓ ସଭା ମଧ୍ୟରେ କି ବିଶେଷ ଅଛି?

ଉତ୍ତର। ଶିଷ୍ୟମାନଙ୍କର ସମ୍ପ୍ରଦାୟକୁ ମଣ୍ଡଳୀ ବୋଲଯାଏ; ପୁଣି ଯେଉଁ ଜନତା ଶିକ୍ଷା ଓ ଉପାସନା ନିମିତ୍ତ ମିଶାମିଶି ହୋଇ ଏକତ୍ରିତ ହୁଅନ୍ତି, ସେମାନଙ୍କୁ ସଭା ବୋଲଯାଏ। ୧କର ୧୪; ୨୩-୨୫।

୧୩ ପ୍ର। ନୂତନନିୟମୋକ୍ତ ଭିନ୍ନ୨ ମଣ୍ଡଳୀ ପରସ୍ପର କିପ୍ରକାର ଜ୍ଞାନ କଲେ?

ଉତ୍ତର। ପୃଥକ୍ ଓ ସ୍ୱାଧୀନ ସମ୍ପ୍ରଦାୟ ପରି। "ପ୍ରତ୍ୟେକ ମଣ୍ଡଳୀ," ପ୍ରେ ୧୪; ୨୩। ୧କର ୪; ୧୭। "ତୁମ୍ଭମାନଙ୍କ ବିନୁ ଅନ୍ୟ ମଣ୍ଡଳୀ," ଫିଲି ୪; ୧୫। "ଅନ୍ୟ ମଣ୍ଡଳୀ ଅପେକ୍ଷା ତୁମ୍ଭେମାନେ କେଉଁ ବିଷୟରେ ଊଣା ଅଛ?" ୨କର ୧୨; ୧୩। "ସାଧୁମାନଙ୍କ ସମସ୍ତ ମଣ୍ଡଳୀରେ," ୧କର ୧୪; ୩୩।

୧୪ ପ୍ର। ସେମାନଙ୍କର କି ଏକତା-ବନ୍ଧନ ନ ଥିଲା?

ଉତ୍ତର। ସାଧାରଣ ବିଶ୍ୱାସ ଓ ପ୍ରେମରେ ସେମାନଙ୍କର ଐକ୍ୟ ଥିଲା, ଏବଂ ସେମାନେ ନିଜ୨ର ଓ ଜନସମୂହର ମଙ୍ଗଳନିମିତ୍ତ ସାଧାରଣ-ସୂତ୍ରରେ ଆବଦ୍ଧ ହୋଇ-

ଥିଲେ । ପ୍ରେ ୧୫; ୨୩ । ରୋ ୧୫; ୨୬ । ୧୬;
୧୬ । ୧କର ୧୬; ୧, ୧୯ । ୨କର ୮; ୧୯ ।

୧୫ ପ୍ର । ନୂତନ ଓ ଭିନ୍ନ ମଣ୍ଡଳୀ-ସ୍ଥାପନ ସମ୍ବନ୍ଧରେ କିପ୍ରକାର ବିବେଚନା କର୍ତ୍ତବ୍ୟ?

ଉତ୍ତର । ସଂଖ୍ୟା ଓ ସ୍ଥଳବିଷୟରେ ସୁବିଧା, ଏବଂ ମତର ସାମଞ୍ଜସ୍ୟ । ପ୍ରଥମତଃ, ନଗର ବା ଦେଶର ସମୁଦାୟ ଖ୍ରୀଷ୍ଟିୟାନଗଣ ଏକ ମଣ୍ଡଳୀରେ ଅବସ୍ଥିତ; ତଥାପି ଶିଷ୍ୟମାନେ ସଂଖ୍ୟାରେ ବୃଦ୍ଧିପାଇଲେ ଏକ ସ୍ଥାନରେ ସମ୍ମିଳିତ ହେବା ଅସୁବିଧାଜନକ, ସୁତରାଂ ଭିନ୍ନ ୨ ମଣ୍ଡଳୀର ସ୍ଥାପନ ସମ୍ବନ୍ଧୀୟ । ରୋମ ନଗରରେ ଅନେକ ମଣ୍ଡଳୀ ଥିବାର ଦେଖାଯାଏ । ପାଉଲ ଖ୍ରୀଷ୍ଟଙ୍କପେ ଅକ୍ଲୁଲା ଓ ପ୍ରିସ୍କିଲ୍ଲାର ଗୃହସ୍ଥ ମଣ୍ଡଳୀ ବିଷୟରେ କହନ୍ତି, ରୋମୀ ୧୪; ୫ । ତଦ୍ରୂପେ ଲାୟୋଦିକେୟନକ ଯେ ନିମ୍ଫାଂସ୍ ଗୃହସ୍ଥିତ ମଣ୍ଡଳୀ ବିଷୟରେ ମଧ୍ୟ କହିଅଛନ୍ତି । କଲ ୪; ୧୫ ।

୧୬ ପ୍ର । ଜାତୀୟ ବା ଦେଶିକ ମଣ୍ଡଳୀର ସଂସ୍ଥାପନ କି ନୂତନନିୟମର ବିଧାନାନୁଯାୟୀ ଅଟେ ?

ଉତ୍ତର । ନା, ନୂତନ ନିୟମୋକ୍ତ ମଣ୍ଡଳୀଗଣ ସ୍ୱାଧୀନ ଓ ପରମାର୍ଥିକ ଥିଲେ, ଜାତୀୟ ବା ରାଜଶାସନାଧୀନ ନ ଥିଲେ । ପ୍ରେରିତମାନେ ଯିହୁଦା ଦେଶୀୟ ଏକ ମଣ୍ଡଳୀ, ଗ୍ରିକୀୟ ଦେଶୀୟ ଏକ ମଣ୍ଡଳୀ, ଅସିୟା ଦେଶୀୟ

ଏକ ମଣ୍ଡଳୀ, ଗ୍ରୀସ ଦେଶୀୟ ଏକ ମଣ୍ଡଳୀ, ସ୍ଥାପନ କର ନ ଥିଲେ; କିନ୍ତୁ ଯିହୁଦା, ସିରୟା, ଆସିୟା, ମାକଦୋନୟା ପ୍ରଭୃତି ଦେଶମାନଙ୍କରେ ମଣ୍ଡଳୀମାନ ସ୍ଥାପନ କରିଥିଲେ । ପ୍ରେ ୧୫; ୪୧ । ୧ କର ୧୬; ୧, ୧୯ । ୨ କର ୮; ୧ । ଗାଲ ୧; ୨୨ । ପ୍ରକା ୧; ୪ ।

୧୭ ପ୍ର । ବର୍ତ୍ତମାନ କି ପୁରାତନନିୟମର ବଚନ ଅନୁସାରେ ଜାତୀୟ ମଣ୍ଡଳୀ ସ୍ଥାପିତ ହୋଇଅଛି ?

ଉତ୍ତର । ନା, ଯିହୁଦୀୟ ଧର୍ମ ଗୋଟିଏ ଜାତିଗତ ଧର୍ମ ଥିଲା, କିନ୍ତୁ ତାହା ରାଜକୀୟ କ୍ଷମତାଦ୍ୱାରା ସ୍ଥାପିତ ନ ହୋଇ ଈଶ୍ୱରୀୟ ନିଯୁକ୍ତିଦ୍ୱାରା ସ୍ଥାପିତ ହୋଇଥିଲା, ତାହା ସ୍ଥାପିତ ହେବାର ବିଶେଷ ଅଭିପ୍ରାୟ ଥିଲା; ମଙ୍ଗ ମଶୀହଙ୍କ ଅବତାର ହେତୁରୁ ଅନ୍ୟଦେଶୀୟମାନଙ୍କ ନିମନ୍ତେ ତାହା ଉପଯୋଗୀ ନୁହେ ।

୧୮ ପ୍ର । ଧର୍ମସମ୍ବନ୍ଧୀୟ ନାନା ବିଷୟରେ, ଯିହୁଦୀୟମାନଙ୍କ ଅଧି-କାର ଓ ଖ୍ରୀଷ୍ଟୀୟ ମଣ୍ଡଳୀର ଅଧିକାର ମଧ୍ୟରେ କି ପ୍ରଭେଦ ଅଛି ?

ଉତ୍ତର । ଯିହୁଦୀୟମାନେ ଏକ ଧର୍ମସମ୍ପ୍ରଦାୟ, ଓ ପ୍ରତିଜ୍ଞାବର୍ଣ୍ଣୀର ଅଧିକାରୀ, ଏବଂ ଅବ୍ରହାମର ବଂଶଜ ହେବାରୁ ଧର୍ମସମ୍ବ-ନ୍ଧୀୟ ବିଷୟମାନଙ୍କରେ ଅଧିକାରୀ ଥିଲେ; ମାତ୍ର ଅମ୍ଭେ-ମାନେ ବଂଶାନୁସାରେ ନୋହି କେବଳ ଖ୍ରୀଷ୍ଟଙ୍କଠାରେ

ବ୍ୟକ୍ତିଗତ ବିଶ୍ୱାସଦ୍ୱାରା ମଣ୍ଡଳୀ ସଂକ୍ରାନ୍ତ ସହଭାଗିତାର ଅଧିକାରୀ ହୋଇଅଛୁଁ ।

---

## ୩ ଅଧ୍ୟାୟ ।

### ମଣ୍ଡଳୀର ବିଧିବ୍ୟବସ୍ଥା ।

୧ ପ୍ର । ଖ୍ରୀଷ୍ଟୀୟ ମଣ୍ଡଳୀର ବିଧିବ୍ୟବସ୍ଥାଦ୍ୱାରା ତୁମ୍ଭେ କ'ଣ ବୁଝ ?

ଉତ୍ତର । ପ୍ରଭୁ ଯୀଶୁ ଖ୍ରୀଷ୍ଟ ଆପଣା ଶିଷ୍ୟମାନଙ୍କ ବ୍ୟବହାର ନିମନ୍ତେ ଯେଉଁ ଗୁରୁତର ଧର୍ମବ୍ୟବସ୍ଥା ବା କର୍ତ୍ତବ୍ୟ-କର୍ମ ଶିକ୍ଷା ଦେଇଅଛନ୍ତି ।

୨ ପ୍ର । ଆମ୍ଭମାନଙ୍କ ପ୍ରଭୁ କେଉଁ ବିଧାନ ପାଳନ ଓ ସ୍ଥାପନ କରିଥିଲେ ?

ଉତ୍ତର । ଡୁବନ ଓ ପ୍ରଭୁଙ୍କ ରାତ୍ରିଭୋଜ । ମାଥି ୩; ୧୩, ୧୬ । ୨୮; ୧୯ । ମାର୍କ ୧୬; ୧୫, ୧୬ । ମାଥି ୨୬; ୨୬-୩୦ । ମାର୍କ ୧୪; ୨୨-୨୫ । ଲୂକ ୨୨; ୧୬-୨୦ । ୧କରି ୧୧; ୨୩-୨୯ ।

୩ ପ୍ର । ସେସବୁ ନାନାସମୟରେ କେଉଁ ଭିନ୍ନ ନାମଦ୍ୱାରା ବ୍ୟକ୍ତ ହୋଇଅଛି ?

ଉତ୍ତର । ସେସବୁକୁ ପ୍ରଭୁଙ୍କ ବ୍ୟବସ୍ଥା ଓ ନିୟମ କୁହାଯାଏ; ଏବଂ ପ୍ରଭୁଙ୍କ ରାତ୍ରିଭୋଜ, ଖ୍ରୀଷ୍ଟଙ୍କ ମୃତ୍ୟୁସ୍ମରଣାର୍ଥକ ଭୋଜବ୍ୟବସ୍ଥା । (୨୩ ପ୍ରଶ୍ନ ଦେଖ ।)

୪ ପ୍ର । ଏହି ଶବ୍ଦର ଅଭିପ୍ରାୟ କି?

ଉତ୍ତର । ପ୍ରଭୁଙ୍କ ବ୍ୟବସ୍ଥା (Sacrament) ବୋଲିବାଦ୍ୱାରା ସମ୍ବନ୍ଧସୂଚକ କୌଣସି ପବିତ୍ର ବିଷୟ, ଦାସତ୍ୱର ଶପଥ, ଧର୍ମକର୍ମାନୁଷ୍ଠାନ ଅଭିପ୍ରେତ ଅଟେ; ଖ୍ରୀଷ୍ଟଙ୍କ ମରଣସ୍ମାରକ ଭୋଜ (Eucharist) ବୋଲିବାଦ୍ୱାରା ଉତ୍ସର୍ଗ କରାଯାଇଥିବା ବିଷୟର ଧନ୍ୟବାଦ ଅଭିପ୍ରେତ ଅଟେ ।

୫ ପ୍ର । ଏହି ଶବ୍ଦ ସବୁ ବ୍ୟବହାର କରିବା କହେତୁ ବାଞ୍ଛନୀୟ ନୁହେ?

ଉତ୍ତର । ସେସବୁ ଧର୍ମଶାସ୍ତ୍ରୀୟ ଶବ୍ଦ ନୁହେ, ଏବଂ ସୁସମାଚାର ସମ୍ବନ୍ଧୀୟ ବିଧିବିଧାନର ସରଳତା ନଷ୍ଟ ହେବା ସମୟାବଧି ସେସବୁର ବ୍ୟବହାର ହୋଇଅଛି ।

୬ ପ୍ର । ଆଉ କେଉଁ ଅଭିପ୍ରାୟ ପ୍ରକାଶ କରାଯାଇପାରେ?

ଉତ୍ତର । ସେସବୁର ଅଭିପ୍ରାୟ ନିତାନ୍ତ ସାଧାରଣ ଅଟେ, ଖ୍ରୀଷ୍ଟିୟାନ ପ୍ରତି ପ୍ରତ୍ୟେକ ପ୍ରତିଜ୍ଞାବନ୍ଧନ ବ୍ୟବସ୍ଥା ଅଟେ, ଓ ପ୍ରତ୍ୟେକ ଭୋଜ ସ୍ମରଣାର୍ଥକ ଭୋଜ ଅଟେ ।

୭ ପ୍ର । ଖ୍ରୀଷ୍ଟିୟାନ ଜୀବନର ବିଧାନ କି?

ଉତ୍ତର । ଜୀବନ ବାହ୍ୟଲକ୍ଷଣ ବା ଚିହ୍ନମାନ, ତଦ୍ୱାରା ଆମ୍ଭେମାନେ ପ୍ରକାଶରୂପେ ଖ୍ରୀଷ୍ଟଙ୍କଠାରେ ଆପଣାମାନଙ୍କର ଦୃଢତର ସଂଲଗ୍ନତା ଓ ବିଶ୍ୱାସ ଥିବାର ସ୍ୱୀକାର କରୁଁ । "ଯେହେତୁ ତୁମ୍ଭେ ଯେତେ ଲୋକ ଖ୍ରୀଷ୍ଟଙ୍କ

ଉଦ୍ଦେଶରେ ଡୁବିତ ହୋଇଅଛ, ସମସ୍ତେ ତାହାଙ୍କୁ ବସ୍ତ୍ରରୂପେ ପିନ୍ଧିଅଛ ।" ଗାଲ୍ ୩; ୨୭ ।

୮ ପ୍ର । କିପ୍ରକାରେ ଡୁବନବାପ୍ତି ପାଳିତ ହେବା ଉଚିତ?

ଉତ୍ତର । ଜଳରେ ସମସ୍ତ ଶରୀର ଡୁବାଇବା ଦ୍ୱାରା ।

୯ ପ୍ର । କିପରି ଏହା ବାହୁଲ୍ୟରୂପେ ସ୍ଥିରୀକୃତ ହେଲା?

ଉତ୍ତର । (୧) ଏହି ଶବ୍ଦର ମୌଳିକ ଅର୍ଥ ଦ୍ୱାରା; (୨) ପ୍ରଥମେ ପ୍ରତିପାଳିତ ହୋଇଥିବା ବିଧିର ସାଙ୍ଗେତିକ ଅବସ୍ଥା ଦ୍ୱାରା; (୩) ବିଧିର ତାତ୍ପର୍ଯ୍ୟଦ୍ୱାରା; (୪) ଆଦ୍ୟ ମଣ୍ଡଳୀର ବ୍ୟବହାରଦ୍ୱାରା; ଏବଂ ପ୍ରାୟ ୧୩୦୦ ବର୍ଷ କାଳ ସମସ୍ତ ଖ୍ରୀଷ୍ଟିୟାନ ରାଜ୍ୟରେ ପ୍ରଚଳିତ ହେବାଦ୍ୱାରା ନିର୍ଦ୍ଧାରିତ ହୋଇଅଛି ।

ପ୍ରଥମ ଡୁବନ, (baptisma) ମଜ୍ଜନ; ବାପ୍ତୋ (bapto) ଡୁବିବାର, ଅନ୍ତର୍ମଗ୍ନ ହେବାର ବା ପୋତିବାର; ଡୁବାଇ ଚିହ୍ନ କରିବାର, ଭିତରେ ବୁଡାଇ ପୂର୍ଣ୍ଣ କରିବାର; ବାପ୍ତିଜୋ, (baptizo) ପୁନଃ୨ ଡୁବିବାର, ଜାହାଜ ସମ୍ବନ୍ଧରେ, ଜଳମଗ୍ନ ହେବାର, ଧସିଯିବାର; ସ୍ନାନ ବା ବୁଡ ଇତ୍ୟାଦି । ବାପ୍ତିସ୍ମ ଶବ୍ଦର ଅର୍ଥ ସେଚନ ବା ଢାଳିବାର ବୋଲି ଗ୍ରୀକ ଭାଷାରେ କୌଣସି ପ୍ରୟୋଗ ବା ଉଦାହରଣ ନାହିଁ ।

ଦ୍ୱିତୀୟ । ଯୀଶୁ ଯର୍ଦ୍ଦନରେ ଡୁବିତ ହୋଇଥିଲେ, ଆଉ ଡୁବିତ ହୋଇ "ଜଳମଧ୍ୟରୁ ଉଠି ଗଲେ," ମାଥି ୩;

୧୬ । "ଯୋହନ ମଧ୍ୟ ଶାଲମ ନଗର ନିକଟବର୍ତ୍ତୀ ଐନୋନ ଗ୍ରାମରେ ବହୁତ ଜଳ ଥିବାରୁ ସେଠାରେ ବାପ୍ତିସ୍ମ ଦେଉଥିଲେ," ଯୋ ୩ ; ୨୩ । ଫିଲିପ ଓ ନପୁଂସକ ଦୁହେଁ ଜଳ ଭିତରକୁ ଯାଇଥିଲେ, ଆଉ ସେମାନଙ୍କ ବିଷୟରେ ଉକ୍ତ ଅଛି, ଯେ "ସେମାନେ ଜଳ ଭିତରୁ ବାହାର ଉପରକୁ ଆସିଥିଲେ ।" ପ୍ରେ ୮ ; ୩୮, ୩୯ ।

ତୃତୀୟ । "ମୃତ୍ୟୁସୂଚକ ବାପ୍ତିସ୍ମଦ୍ୱାରା ଖ୍ରୀଷ୍ଟଙ୍କ ସହିତ କବରପ୍ରାପ୍ତ ହେଲୁ" ରୋମୀ ୬ ; ୪ । "ବାପ୍ତିସ୍ମରେ ତାଙ୍କ ସହିତ କବରପ୍ରାପ୍ତ ହେଲୁ," କଲ ୨ ; ୧୨ ।

ଚତୁର୍ଥ । ତୃତୀୟ ଶତ ମଣ୍ଡଳୀରେ,ପୀଡ଼ିତାବସ୍ଥା ବ୍ୟତୀତ, ବାପ୍ତିସ୍ମ ପରିବର୍ତ୍ତରେ ସେଚନ ବା ଢାଳିବାର ଜଣା ଯାଇ ନ ଥିଲା । ଚତୁର୍ଦ୍ଦଶ ଶତ ବର୍ଷ ପର୍ଯ୍ୟନ୍ତ ବାପ୍ତିସ୍ମର ସେଚନର ପରିବର୍ତ୍ତନ ସର୍ବସାଧାରଣ ହୋଇ ନ ଥିଲା । ଗ୍ରୀକ ମଣ୍ଡଳୀ ଏମନ୍ତ ନିମଜ୍ଜନଦ୍ୱାରା ବାପ୍ତିସ୍ମ ପ୍ରତିପାଳନ କରି ଆସୁଅଛନ୍ତି, ଇଂଲଣ୍ଡ ମଣ୍ଡଳୀ ସାଧାରଣ ପ୍ରାର୍ଥନା ପୁସ୍ତକରେ ଜଳାନ୍ତର୍ମଜ୍ଜନ ଲକ୍ଷକ ଅର୍ଥାତ୍ ବାପ୍ତିସ୍ମ ବିଧିକି ସର୍ବୋତ୍ତମ ବୋଲି ପ୍ରକାଶ କରନ୍ତି, "ସେ (ପୁରୋହିତ) ବିବେଚନା ଓ ସାବଧାନତାପୂର୍ବକ ତାହାକୁ ଜଳରେ ବୁଡ଼ାଇବେ ।" "ଏବଂ ତହିଁଉତ୍ତାରେ ତାହାକୁ ଜଳରେ ବୁଡ଼ାଇବେ ।"

୧୦ ପ୍ର । କେଉଁମାନେ ଏହି ବିଧି ପାଳିବାକୁ ବାଧ୍ୟ?

ଉତ୍ତର । ଯେଉଁମାନେ ଆପଣା୨ ପାପରୁ ମନ ଫେରାଇ ପ୍ରଭୁ ଯୀଶୁ ଖ୍ରୀଷ୍ଟଙ୍କଠାରେ ବିଶ୍ୱାସ କରନ୍ତି, କେବଳ ସେମାନେ ତାହା ପାଳିବେ । "ମନ ଫେରାଅ, ତୁମ୍ଭେ-ମାନେ ପ୍ରତ୍ୟେକେ ଯୀଶୁ ଖ୍ରୀଷ୍ଟଙ୍କ ନାମରେ ତୁବିତ ହୁଅ ।" ପ୍ରେ ୨; ୩୮ । "ଯେ କେହି ବିଶ୍ୱାସ କରି ତୁବିତ ହୁଅଇ, ସେ ପରିତ୍ରାଣ ପାଇବ ।" ମାର୍କ ୧୬; ୧୬ । "ତହୁଁ ସେମାନେ ଆନନ୍ଦରେ ତାହାଙ୍କ ବାକ୍ୟ ଗ୍ରହଣ କରି ତୁବିତ ହେଲେ ।" ପ୍ରେ ୨; ୪୧ । "ଦେଖ, ଏଠାରେ ଜଳ ଅଛି, ଆମ୍ଭର ତୁବିତ ହେବାର କି ବାଧା? ପୁଣି ଫିଲିପ କହିଲା, ଯେବେ ତୁମ୍ଭେ ସର୍ବାନ୍ତଃକରଣରେ ବିଶ୍ୱାସ କର, ତେବେ ତୁମ୍ଭେ ହୋଇ ପାର ।" ପ୍ରେ ୮; ୩୬, ୩୭ ।

୧୧ ପ୍ର । ତୁବନସମ୍ବନ୍ଧୀୟ ପୁନର୍ଜନ୍ମବିଷୟକ ଉପଦେଶ ଶାସ୍ତ୍ର-ବିରୁଦ୍ଧ ବୋଲି କିରୂପେ ପ୍ରମାଣିତ ହେବ?

ଉତ୍ତର । ଯେଉଁ ବିଶ୍ୱାସୀ କେବଳ ତୁବିତ ହେବାକୁ ଥାଏ, ସେ ନିଶ୍ଚୟ ପୁନର୍ଜନ୍ମ ପ୍ରାପ୍ତ ବା ପୁନର୍ଜାତ; ଏବଂ ତୁବନ ବିଧାନ ଚିହ୍ନମାତ୍ର, ପୁନର୍ଜନ୍ମର ହେତୁ ନୁହେ । "ଯେ କେହି ଯୀଶୁ ମଶୀହ ଅଟନ୍ତି ବୋଲି ବିଶ୍ୱାସ କରଇ, ସେ ଈଶ୍ୱରଙ୍କଠାରୁ ଜାତ ।" ୧ଯୋ ୫; ୧ । "ଆମ୍ଭମାନଙ୍କ ପରି ଯେଉଁମାନେ ପବିତ୍ର-ଆତ୍ମା ପାଇ-

ଅଛନ୍ତି, ସେମାନଙ୍କୁ ଡୁବିତ ହେବାପାଇଁ କି କେହି ଜଳ ନିଷେଧ କରି ପାରଇ?" ପ୍ରେ ୧୦; ୪୭ । "ଯେହେତୁ ଅମ୍ଭେ ସମସ୍ତେ ଏକ ଆତ୍ମାଦ୍ୱାରା ଏକ ଶରୀର ହେବା ଉଦ୍ଦେଶରେ ଡୁବିତ ହୋଇଅଛୁଁ ।" ୧କରି ୧୨; ୧୩ ।

୧୨ ପ୍ର । କିହେତୁ ଶିଶୁମାନେ ଡୁବିତ ହେବା ଅନୁଚିତ?

ଉତ୍ତର । କାରଣ ସେମାନେ ମନଫେରଣ କିମ୍ବା ଖ୍ରୀଷ୍ଟଙ୍କଠାରେ ବିଶ୍ୱାସ କରି ପାରନ୍ତି ନାହିଁ ।

୧୩ ପ୍ର । ଯେତେବେଳେ ପ୍ରେରିତମାନଙ୍କ ଦ୍ୱାରା ସମସ୍ତ ପରିବାର ଡୁବିତ ହୋଇଥିଲେ, ସେତେବେଳେ କି ଶିଶୁମାନେ ଅନ୍ତର୍ଭୁକ୍ତ ନ ଥିଲେ?

ଉତ୍ତର । ନା, ବାସ୍ତବିକ ନ ଥିଲେ । ପାଉଲ ଓ ଶୀଲ ଫିଲିପୀୟ କାରରକ୍ଷକଙ୍କୁ "ଓ ତାହାର ଗୃହସ୍ଥିତ ସମସ୍ତଙ୍କୁ ପ୍ରଭୁଙ୍କ କଥା କହିଲେ;" ଏବଂ ସେ "ସପରିବାର ଈଶ୍ୱରଙ୍କଠାରେ ବିଶ୍ୱାସ କରି ଆନନ୍ଦିତ ହେଲା ।" ପ୍ରେ ୧୬; ୩୨, ୩୪ । ଲୂଦିୟାର ପରିବାର "ଭ୍ରାତୃଗଣ" ରୂପେ ଗଣିତ ହୋଇଥିଲେ । ସେମାନଙ୍କୁ ପାଉଲ ଓ ଶୀଲ "ସାନ୍ତ୍ୱନା ଦେଇଥିଲେ ।" ପ୍ରେ ୧୬; ୪୦ । ଆଖାୟା ପ୍ରଦେଶରେ ପାଉଲଙ୍କର ପ୍ରଥମ ଫଳସ୍ୱରୂପ ସ୍ତିଫାନର ପରିବାର ବୟଃପ୍ରାପ୍ତ ବ୍ୟକ୍ତି ଥିଲେ, ଯେହେତୁ ସେମାନେ "ସାଧୁଲୋକ-

ମାନଙ୍କ ସେବାରେ ନିବଦ୍ଧ ହୋଇଥିଲେ ।" ୧କର ୧୬;
୧୫ ।

୧୪ ପ୍ର । ଶିଶୁମାନେ ଖ୍ରୀଷ୍ଟଙ୍କ ନିକଟକୁ ଅଣା ଗଲାବେଳେ
ସେ କି ସେମାନଙ୍କୁ ଗ୍ରହଣ କରିଥିଲେ ?

ଉତ୍ତର । ହଁ, "ସେ ଶିଶୁମାନଙ୍କୁ କୋଳ କରି ସେମାନଙ୍କ
ଗାତ୍ରରେ ହସ୍ତ ଦେଇ ଆଶୀର୍ବାଦ କଲେ ।" ମାର୍କ ୧୦;
୧୪-୧୬ ।

୧୫ ପ୍ର । ଏଥିଦ୍ୱାରା ଆମ୍ଭେମାନେ କି ଶିକ୍ଷା ପାଉ ?

ଉତ୍ତର । ବାଳକମାନେ ବାଲ୍ୟକାଳରୁ ତ୍ରାଣକର୍ତ୍ତାଙ୍କ ବିଷୟରେ
ଜ୍ଞାନ ଲାଭ କରିବାପାଇଁ, ଓ ତାଙ୍କର ଆଶୀର୍ବାଦ
ଗ୍ରହଣ କରିବାପାଇଁ ତାଙ୍କ ନିକଟକୁ ଆଣା ଯିବା
ଉଚିତ । "ଶିଶୁମାନଙ୍କୁ ଆମ୍ଭ ନିକଟକୁ ଆସିବାକୁ ଦିଅ,
ସେମାନଙ୍କୁ ମନା ନ କର ।" ମାର୍କ ୧୦; ୧୪ ।

୧୬ ପ୍ର । ତଦ୍ଦ୍ୱାରା କି ଆଉ କୌଣସି ଶିକ୍ଷା ଦିଆ ଯାଇଥିଲା ?

ଉତ୍ତର । ହଁ, ଆମ୍ଭେ ସମସ୍ତେ ସରଳ ଓ ଶିଶୁବତ୍ ବିଶ୍ୱାସରେ
ପରମେଶ୍ୱରଙ୍କ ରାଜ୍ୟର ମଙ୍ଗଳସମାଚାର ଗ୍ରହଣ
କରିବା ଉଚିତ । "ଆମ୍ଭେ ତୁମ୍ଭମାନଙ୍କୁ ସତ୍ୟ କହୁ,
ଯେଉଁ ଜନ ଶିଶୁ ପ୍ରାୟ ହୋଇ ଈଶ୍ୱରଙ୍କ ରାଜ୍ୟ
ଗ୍ରହଣ ନ କରେ, ସେ କେବେହେଁ ସେଥିରେ ପ୍ରବେଶ
କରି ନ ପାରିବ ।" ମାର୍କ ୧୦; ୧୫ । ଲୂକ ୧୮;
୧୭ । ମାଥି ୧୮; ୩ ।

୧୭ ପ୍ର । ଯାଜକମାନଙ୍କ ମନଫେରଣ ଓ ବିଶ୍ୱାସ ସ୍ୱୀକାର କରିବା ନିମନ୍ତେ ତାହାଙ୍କ ଅନ୍ୟ ଲୋକମାନେ ମଧ୍ୟସ୍ଥ, ପ୍ରତିନିଧି, ଧର୍ମପିତା ବା ଧର୍ମମାତାରୂପେ ଅହୂତ ନୋହିବେ ?

ଉତ୍ତର । କାରଣ ଏକ ମନୁଷ୍ୟ ଅନ୍ୟ ମନୁଷ୍ୟପାଇଁ ମନଫେରଣ ଓ ବିଶ୍ୱାସ କରିବା ଅସମ୍ଭବ, ଏବଂ ସେପରି କରିବାକୁ ପ୍ରତିଜ୍ଞା କରିବା ପରମେଶ୍ୱରଙ୍କ ନିକଟରେ ନିତାନ୍ତ ଘୃଣାଯୋଗ୍ୟ, ପୁଣି ଆମ୍ଭମାନଙ୍କ ସାଧାରଣ ଜ୍ଞାନରେ ଅଗ୍ରାହ୍ୟ । "ଆମ୍ଭମାନଙ୍କର ପ୍ରତ୍ୟେକ ଜଣ ପରମେଶ୍ୱରଙ୍କ ନିକଟରେ ଆପଣା ଆପଣା କର୍ମର ନିକାଶ ଦେବେ ।" ରୋମୀ ୧୪; ୧୨ । "ଯେହେତୁ ପ୍ରତ୍ୟେକ ମନୁଷ୍ୟ ଆପଣା ଆପଣା ବୋଝ ବୋହିବେ" ଗାଲା ୬; ୫ ।

୧୮ ପ୍ର । କିନ୍ତୁ ପିତାମାତାମାନେ କି ଈଶ୍ୱରଙ୍କ ନିକଟରେ ଆପଣା ଆପଣା ପିଲାମାନଙ୍କ ଲାଗି ଦାୟୀ ନୁହନ୍ତି ?

ଉତ୍ତର । ସେମାନେ ସନ୍ତାନମାନଙ୍କ ଉପଯୁକ୍ତ ଶିକ୍ଷା ଲାଗି ଦାୟୀ ଅଟନ୍ତି, ଏବଂ ସେମାନଙ୍କୁ ସୁପରାମର୍ଶ ଓ ପ୍ରଭୁ ବିଷୟକ ସଦୁପଦେଶ ଦ୍ୱାରା ଉନ୍ନତି କରିବାକୁ ଆଦିଷ୍ଟ ଅଟନ୍ତି । ଏଫି ୬; ୪

୧୯ ପ୍ର । କାହିଁକି ତେବେ ମଧ୍ୟସ୍ଥ, ପ୍ରତିନିଧି, ଧର୍ମପିତା ଓ ଧର୍ମମାତାମାନେ ଆବଶ୍ୟକ ହେଲେ ?

ଉତ୍ତର । ସେମାନେ କେବଳ ମନୁଷ୍ୟମାନଙ୍କ ଆଜ୍ଞାରେ ନିଯୁକ୍ତ

ହୁଅନ୍ତି; ଏବଂ ସେମାନେ ଖ୍ରୀଷ୍ଟୀୟ ସତ୍ୟତା ଓ ଖ୍ରୀଷ୍ଟୀୟ ବିଧାନର ଅନ୍ୟଥାକରଣଦ୍ୱାରା ଈଶ୍ୱରଙ୍କ ଅଜ୍ଞା ବ୍ୟର୍ଥ କରନ୍ତି ।

୨୦ ପ୍ର । ଧର୍ମରେ ସ୍ଥିର କରିବା ସମ୍ବନ୍ଧରେ କି ମାନୁଷିକ କ୍ଷମତା ଭିନ୍ନ ଅନ୍ୟତର ବସ୍ତୁ ଅଛି ?

ଉତ୍ତର । ମାନୁଷିକ କ୍ଷମତା ଭିନ୍ନ ଅନ୍ୟତର ନାହିଁ ।

୨୧ ପ୍ର । ତେବେ କିପରି ପ୍ରେରିତମାନେ ମଣ୍ଡଳୀଗଣକୁ ସୁସ୍ଥିର କଲେ ?

ଉତ୍ତର । ସଦୁପଦେଶ ଦ୍ୱାରା । "ଶିଷ୍ୟମାନଙ୍କୁ ଉପଦେଶ ଦେଇ ସେମାନଙ୍କ ମନକୁ ବିଶ୍ୱାସରେ ସୁସ୍ଥିର କଲେ ।" ଇତ୍ୟାଦି, ପ୍ରେ ୧୪; ୨୨ ।

୨୨ ପ୍ର । ପ୍ରଭୁଙ୍କ ରାତ୍ରିଭୋଜନର ବସ୍ତୁ କି ?

ଉତ୍ତର । ଖ୍ରୀଷ୍ଟଙ୍କ ଶିଷ୍ୟ ସମ୍ପ୍ରଦାୟ ଏକତ୍ର ହୋଇ ରୋଟୀ ଓ ଦ୍ରାକ୍ଷା-ରସରେ ସହଭାଗୀ ହେବା ଦ୍ୱାରା, ପାପମୋଚନ ନିମିତ୍ତେ ସେମାନଙ୍କ ଲାଗି ଖ୍ରୀଷ୍ଟଙ୍କ ଶରୀର ଭଗ୍ନ ଓ ଆମ୍ଭମାନଙ୍କ ଲାଗି ଖ୍ରୀଷ୍ଟଙ୍କ ରକ୍ତ ପାତିତ ହେବାର ପ୍ରକାଶ କର-ନ୍ତି । ମାଥି ୨୬; ୨୬-୨୮ । ମାର୍କ ୧୪; ୨୨-୨୪ ଲୂକ ୨୨; ୧୭-୨୦ । ୧ କରି ୧୧; ୨୩-୨୬ ।

୨୩ ପ୍ର । ନୂତନ ନିୟମରେ ଏହା କି ଶବ୍ଦରେ କଥିତ ?

ଉତ୍ତର । "ପ୍ରଭୁଙ୍କ ରାତ୍ରିଭୋଜନ ।" ୧ କରି ୧୧; ୨୦ । "ପ୍ରଭୁଙ୍କ ମେଜ" ୧ କରି ୧୦; ୨୧ । "ଖ୍ରୀଷ୍ଟଙ୍କ ମାଂସ ଓ

ରକ୍ତର ସହଭାଗୀ ।" ୧କରି ୧୦; ୧୬ । "ତାଙ୍କ ରକ୍ତରେ ସ୍ଥାପିତ ନୂତନ ନିୟମ ।" ଲୂକ ୨୨; ୨୦ । ୧କରି ୧୧; ୨୫ । "ରୋଟୀ ଭାଙ୍ଗିବାର ।" ପ୍ରେ ୨; ୪୨ । ୨୦; ୭ ।

୨୪ ପ୍ର । କି ଅଭିପ୍ରାୟରେ ଆମ୍ଭେମାନେ ଏହା ପାଳନ କରୁଁ?

ଉତ୍ତର । ଖ୍ରୀଷ୍ଟଙ୍କ ସ୍ମରଣ ଉପଲକ୍ଷରେ, ଏବଂ ତାଙ୍କର ପୁନରାଗମନ ପର୍ଯ୍ୟନ୍ତ ତାଙ୍କ ମରଣ ପ୍ରକାଶ କରିବା ପାଇଁ; ଲୂକ ୨୨; ୧୯ । ୧କରି ୧୧; ୨୪-୨୬ ।

୨୫ ପ୍ର । କାହାଦ୍ୱାରା ଏହା ପାଳିତ ହେବା ବିଧେୟ?

ଉତ୍ତର । କେବଳ ଶିଷ୍ୟମାନଙ୍କ ଦ୍ୱାରା । ପ୍ରେ ୨୦; ୭ ।

୨୬ ପ୍ର । ପତିତ ଓ ମୃତକଳ୍ପ ଲୋକଙ୍କ ପକ୍ଷରେ କି ହେତୁ ଏହି ବିଧାନ ପାଳନ ବାଧ ଯୋଗ୍ୟ?

ଉତ୍ତର । ଏହା ନୂତନ ନିୟମର କୌଣସି ସ୍ଥାନରେ ଆଜ୍ଞା କରା ଯାଇ ନାହିଁ, କିଅବ ପ୍ରେରିତମାନଙ୍କ ଦ୍ୱାରା ପ୍ରତିପାଳିତ ହୋଇ ନାହିଁ । ଯାକୁବ ୨; ୨୪, ୨୫

୨୭ ପ୍ର । ଏହି ଅନୁଷ୍ଠାନ ବିଷୟରେ ଅଉ କେଉଁ ଗୁରୁତର ହେତୁବାଦ ଦର୍ଶାଇ ପାରିବ?

ଉତ୍ତର । ରୋଟୀ ଓ ଦ୍ରାକ୍ଷାରସରେ ଐନ୍ଦ୍ରଜାଳିକ ଅନୁଷ୍ଠାନ ତୁଲ୍ୟ ନିଗୂଢ ଶକ୍ତି ଥିବାର, ଓ ତାହାଁର ସହଭାଗୀମାନଙ୍କ ପରିତ୍ରାଣ ନିଶ୍ଚିତ ହେବାର କେହି ୨ ସ୍ୱୀକାର

କରନ୍ତୁ, ମଧ୍ୟ ବର୍ତ୍ତମାନ କରୁଅଛନ୍ତି, ଏହା ମାନବୀ ଦାୟିତ୍ୱର ବିଷୟ ।

୨୮ ପ୍ର । ଖ୍ରୀଷ୍ଟଙ୍କ ଆଜ୍ଞାରୁ ଭ୍ରାନ୍ତ ହେବା ବିଷୟରେ ପ୍ରେରିତ-ମାନେ କି ଚେତନା ଦେଇଅଛନ୍ତି?

ଉତ୍ତର । "ସାବଧାନ, କେହି ଯେପରି ଦର୍ଶନ ବିଦ୍ୟାର କୌଶଳ ଓ ନିରର୍ଥକ କାପଟ୍ୟ ଦ୍ୱାରା ସାଂସାରିକ ସୂତ୍ରାନୁସାରେ ଲୌକିକ ପରମ୍ପରାଗତ ବାକ୍ୟ ପ୍ରମାଣ ଦେଇ ଖ୍ରୀଷ୍ଟଙ୍କ ବ୍ୟବସ୍ଥା ବିରୁଦ୍ଧରେ ତୁମ୍ଭମାନଙ୍କୁ ଭ୍ରାନ୍ତ ନ କରେ ।" କଲ ୨; ୮ ।

୨୯ ପ୍ର । ମଣ୍ଡଳୀଗଣ କି ଆପଣା୨ ଉପଯୁକ୍ତ ବୋଧାନୁସାରେ ବିଧାନ ସବୁ ପରିବର୍ତ୍ତନ କରିପାରନ୍ତି ?

ଉତ୍ତର । ନା, ଅନେ୍ୟମାନେ ପ୍ରଭୁଙ୍କ ସତ୍ୟପଥ ବିପରୀତ କଲେ ସମସ୍ତ ପବିତ୍ରତାର ଶତ୍ରୁ ହେବେ; ଖ୍ରୀଷ୍ଟ ଯାହା ଆଜ୍ଞା କଲେ, ତାଙ୍କର ମିତ୍ରମାନେ କେବଳ ତାହା ପ୍ରତିପାଳନ କରନ୍ତି । ପ୍ରେ ୧୩; ୧୦ । ଯୋ ୧୫; ୧୪ । ଲୂ ୬; ୪୬ ।

---

## ଚତୁର୍ଥ ଅଧ୍ୟାୟ । ମଣ୍ଡଳୀର ଶାସନ ଓ କର୍ତ୍ତୃତ୍ୱ ।

୧ ପ୍ର । ନୂତନ ନିୟମରେ ମଣ୍ଡଳୀର ଶାସନ ଓ କର୍ତ୍ତୃତ୍ୱ ବିଷୟରେ କିପରି ଶିକ୍ଷା ଦିଆ ଯାଇଅଛି?

ଉତ୍ତର । ଆମ୍ଭମାନଙ୍କ ପ୍ରଭୁଙ୍କ ଓ ପ୍ରେରିତମାନଙ୍କ ବାକ୍ୟ ଦ୍ୱାରା ଏବଂ ଆଦ୍ୟମଣ୍ଡଳୀ ସମୂହର ଉଦାହରଣ ଦ୍ୱାରା ।

୨ ପ୍ର । କି ଅଭିପ୍ରାୟରେ ସେହି ସବୁ ରକ୍ଷିତ ଓ ପାଳିତ ହେବା ଉଚିତ?

ଉତ୍ତର । ଉପାସନା ପ୍ରଭୃତି ସାମାଜିକ ବ୍ୟବହାର ଜାଗ୍ରତ ରଖିବା, ପବିତ୍ରତା ରକ୍ଷା କରିବା, ଏବଂ ଜଗତରେ ମଣ୍ଡଳୀର ଶ୍ରୀବୃଦ୍ଧି ଓ ବିସ୍ତୃତ ନିମନ୍ତେ ଉତ୍ତରୋତ୍ତର ଯତ୍ନ କରିବା, ଇତ୍ୟାଦି ଅଭିପ୍ରାୟରେ ପ୍ରତିପାଳିତ। ଯଥା, ପ୍ରେ ୨; ୨ । ୯; ୨୨, ୨୭ । ୧୦; ୪୭, ୪୮ । ରୋମୀ ୧୪; ୧ । ୨ ଯୋ ୧୦; ୧୧ । ୧ କରି ୫; ୧୨, ୧୩ । ୧୧; ୧୭, ୧୮ । ୨ ଥେସ ୩; ୭ । ତୀତ ୩; ୧୦ । ମାଥି ୭; ୨୦; ୨୮; ୧୯, ୨୦ ।

୩ ପ୍ର । କିଏ ମଣ୍ଡଳୀର ଅଦ୍ୱିତୀୟ ମସ୍ତକସ୍ୱରୂପ?

ଉତ୍ତର । ଯୀଶୁ ଖ୍ରୀଷ୍ଟ । "ସେ ମଣ୍ଡଳୀରୂପ ଶରୀରର ମସ୍ତକ !" ପୁଣି "ମଣ୍ଡଳୀର ସମସ୍ତ ବିଷୟ ଉପରେ ମସ୍ତକସ୍ୱରୂପେ ନିଯୁକ୍ତ ।" କଲ ୧; ୧୮ । ୨; ୧୦, ୧୯ । ଏଫି ୧; ୨୨ । ୪; ୧୫ ।

୪ ପ୍ର । କାହା ଉପରେ ମଣ୍ଡଳୀର ଶାସନ ଭାର ରହେ ?

ଉତ୍ତର । କର୍ମନିର୍ବାହକ ପରିଚାରକ ଆଦି ସଭ୍ୟସମୂହ ଉପରେ। ପ୍ରେ ୧; ୧୫-୨୬ । ୬; ୧-୭ । ୧୫; ୨୨-୨୫ । ୧ କରି ୫; ୧୩ । ରୋମ ୫; ୧୭ ।

୫ ପ୍ର । କେବଳ କେଉଁ ବ୍ୟବସ୍ଥା ଦ୍ୱାରା ମଣ୍ଡଳୀ ଆପଣା କାର୍ଯ୍ୟ ଧାର୍ମିକତାର ସାଧନ କରିବା ଉଚିତ?

ଉତ୍ତର । ଖ୍ରୀଷ୍ଟଙ୍କ ପ୍ରଦତ୍ତ ବ୍ୟବସ୍ଥା ଦ୍ୱାରା । ମ.ଥି ୨୮; ୨୦ । ଯୋ ୧୩; ୧୩ । ୧୪; ୧୫ । ଗାଲ ୬; ୨ । କଲ ୨; ୮ ।

୬ ପ୍ର । ନୂତନ ନିୟମାନୁସାରେ ମଣ୍ଡଳୀମାନଙ୍କର କେଉଁ ୨ କର୍ମକର୍ତ୍ତା ଥିଲେ?

ଉତ୍ତର । ପାଳକ ବା ପ୍ରାଚୀନମାନେ, ଦକନ ବା ସେବକଗଣ, ଏହି ମଙ୍ଗଳସମାଚାର ପ୍ରଚାରକ ବା ଦୂତମାନେ ।

୭ ପ୍ର । ପାଳକ ବା ପ୍ରାଚୀନମାନଙ୍କର କର୍ତ୍ତବ୍ୟ କାର୍ଯ୍ୟ କି ୨?

ଉତ୍ତର । ଦ୍ୱିବିଧ; ମଣ୍ଡଳୀ ଉପରେ ଅଧ୍ୟକ୍ଷତା କରିବାର, ଏହି ବାକ୍ୟ ଓ ଧର୍ମୋପଦେଶରେ ପରିଶ୍ରମ କରିବାର । ୧ ତୀମ ୫; ୧୭ । ଏବ୍ରୀ ୧୩; ୭, ୧୭ । ୧ ଥେସ ୫; ୧୨ ।

୮ ପ୍ର । ସେମାନେ ଗୋଟିଏ ୨ ମଣ୍ଡଳୀ ଉପରେ, କିଅବା ମଣ୍ଡଳୀଗଣ ଉପରେ ଅଧ୍ୟକ୍ଷତା କଲେ?

ଉତ୍ତର । ଏକ ୨ ମଣ୍ଡଳୀ ଉପରେ । "ପ୍ରତ୍ୟେକ ମଣ୍ଡଳୀରେ ପ୍ରାଚୀନମାନଙ୍କୁ ନିଯୁକ୍ତ କଲେ ।" ପ୍ରେ ୧୪; ୨୩ ।

୯ ପ୍ର । ନୂତନ ନିୟମରେ ବିଶପ ବା ପାଳକ ଓ ପ୍ରାଚୀନ, ଏହି ନାମ କପରି ବ୍ୟବହୃତ ଅଛି?

ଉତ୍ତର । ପରିବର୍ତ୍ତନୀୟ ଭାବରେ; ବିଶପ ଶବ୍ଦ ପାଳକାୟ

ତତ୍ତ୍ୱାବଧାରଣର କର୍ତ୍ତବ୍ୟତା ସୂଚକ, ପ୍ରାଚୀନ ବା ଧାର୍ମିକ ଶବ୍ଦ କାର୍ଯ୍ୟାଳୟର ଗୁରୁତ୍ୱ ଓ ଦାୟିତ୍ୱ ପରଦର୍ଶକ, ଏଫି-ସୀୟ ମଣ୍ଡଳୀର "ପ୍ରାଚୀନବର୍ଗ" ପାଉଲ ଦ୍ୱାରା ମାଲ୍-ଟାକୁ ଆହୂତ ହୋଇଥିଲେ; ଏବଂ ସେମାନେ "ଧର୍ମବେକର୍ଣ୍ଣ" ବା ବିଷପ ବୋଲି ପରଟିତ । ପ୍ରେ ୨୦; ୧୭-୧୮ । ତୀତସ ଙ୍କ ପ୍ରକାର ପ୍ରାଚୀନମାନଙ୍କୁ ନିଯୁକ୍ତ କରିବା ବିଷୟରେ, ଏହା ବିଶେଷରୂପେ ବର୍ଣ୍ଣନା କରିବା ସମୟରେ ପାଉଲ ସେମାନଙ୍କୁ "ବିଷପ" ବା ପାଳକ ବୋଲି କହନ୍ତି । ତୀତ ୧; ୫, ୭ । ପିତର ମଧ୍ୟ "ପ୍ରାଚୀନମାନଙ୍କ" ବିଷୟରେ କହନ୍ତି, "ପଲର ବିଷପ ବା ପାଳକ ହୋଇ" (ଅବା ତତ୍ତ୍ୱା-ବଧାରଣ ଭାର ଗ୍ରହଣ କରି ।) ୧ ପି ୫; ୧, ୨ ।

୧୦ ପ୍ର । ଯିହୁଦ ଓ ଗ୍ରୀକମାନଙ୍କ ବ୍ୟବହାର ମଧ୍ୟରେ କି ଏହା ଉପାଧି ଥିଲା?

ଉତ୍ତର । ଯିହୁଦୀୟ ମହାସଭାର ସଭ୍ୟମାନେ ପ୍ରାଚୀନ ବା ଧାର୍ମିକ ଉପାଧିରେ ପରିଚିତ ଥିଲେ; ଏବଂ ଗ୍ରୀକମାନଙ୍କ ମଧ୍ୟରେ ଯେଉଁମାନେ ପରାଧୀନ ଦେଶ ସବୁରେ ଶାସନକର୍ତ୍ତାରୂପେ ନିଯୁକ୍ତ ହୋଇଥିଲେ, ସେମାନଙ୍କୁ ତତ୍ତ୍ୱାବଧାରକ (Episcopi) ବା ବିଷପ ଆଖ୍ୟା ଦିଆ ଯାଇଥିଲା ।

୧୧ ପ୍ର । ଅମ୍ଭମାନଙ୍କ ଅଧୁନିକ ଲୌକିକମତ-ଅସ୍ୱୀକାରକାରି ମଣ୍ଡଳୀମାନଙ୍କ ମଧ୍ୟରେ ପରିଚାରକ କି ଅଟେ?

ଉତ୍ତର । ନୂତନ ନିୟମର ବ୍ୟବହାର ଓ ଶିକ୍ଷା ଅନୁସାରେ ସେ ଧର୍ମାଧ୍ୟକ୍ଷ ଓ ପ୍ରାଚୀନ, ପାଳକ ଓ ଶିକ୍ଷକ ଅଟେ ।

୧୨ ପ୍ର । ଖ୍ରୀଷ୍ଟିୟାନ ସେବକତ୍ୱ କି ଯାଜକୀୟ କାର୍ଯ୍ୟପଦ୍ଧତି ଅଟେ?

ଉତ୍ତର । ନା, ଯୀଶୁ ଖ୍ରୀଷ୍ଟ ଅମ୍ଭମାନଙ୍କ ମତର ଏକମାତ୍ର ମହା-ଯାଜକ ଅଟନ୍ତି, ଏବଂ ସତ୍ୟ ଖ୍ରୀଷ୍ଟିୟାନ ସମସ୍ତେ ଈଶ୍ୱରଙ୍କ ଉଦ୍ଦେଶରେ ଯାଜକସ୍ୱରୂପ । ଏବ୍ରୀ ୩; ୧ । ୧ପି ୨; ୯ । ପ୍ରକା ୧; ୬ ।

୧୩ ପ୍ର । ଆଦ୍ୟ ଦକନମାନଙ୍କର କି କର୍ତ୍ତବ୍ୟକାର୍ଯ୍ୟ ଥିଲା?

ଉତ୍ତର । ଭିକ୍ଷ୍ୟ ପରିବେଷଣ; ଅର୍ଥାତ୍ ମଣ୍ଡଳୀର ଦାନଧନ ଗ୍ରହଣ ଓ ବିତରଣ କରିବାର । ପ୍ରେ ୬; ୧, ୨ ।

୧୪ ପ୍ର । ଆଉ କେଉଁ କାର୍ଯ୍ୟରେ ଦକନମାନେ ସମୟେ ସମୟେ ନିଯୁକ୍ତ ହୋଇଥିଲେ?

ଉତ୍ତର । ସୁସମାଚାର-ପ୍ରଚାରକ ଓ ଶିକ୍ଷକର କାର୍ଯ୍ୟରେ । ଦକନ ଫିଲିପ ସୁସମାଚାର-ପ୍ରଚାରକ ଥିଲେ । ପ୍ରେ ୮; ୨୬, ୪୦ । ସ୍ତିଫାନ ମଧ୍ୟ ଭଜନାଳୟରେ ବାଦାନୁବାଦ କରିଥିଲେ । ପ୍ରେ ୬; ୯ ।

୧୫ ପ୍ର । ମଣ୍ଡଳୀର ସେବକଗଣ ବୋଲି ବର୍ତ୍ତମାନ ଦକନମାନଙ୍କ ପ୍ରତି କେଉଁ କାର୍ଯ୍ୟ ନିରୂପିତ ଅଛି?

ଉତ୍ତର । ପ୍ରଭୁଙ୍କ ମେଜ ନିକଟରେ ଗୋଷ୍ଠୀ ଓ ଦ୍ୱାରସ୍ଥର ପରିବେଷଣ କାର୍ଯ୍ୟ ।

୧୭ ପ୍ର । ନୂତନ ନିୟମରେ କି ଦିକନତ୍ୱ ଉପାଧିର ପ୍ରଶସ୍ତଭାବ ଅଛି ?

ଉତ୍ତର । ହାଁ, ଏଥିରେ ମଣ୍ଡଳୀ ନିମନ୍ତେ ସାଂସାରିକ ବା ପାରମାର୍ଥିକ ସର୍ବପ୍ରକାର ସେବା ଅନ୍ତର୍ଗତ । ଇଙ୍ଗ୍ଲିଶ୍ ଧର୍ମ୍ମମାର ଯେଉଁ ୨ ସ୍ଥାନରେ "ମିନିଷ୍ଟର" "Minister" ଶବ୍ଦ ବ୍ୟବହୃତ ହୋଇଅଛି, ସେହି ୨ ସ୍ଥାନରେ ଗ୍ରୀକ ଭାଷାରେ "ଦିକନ" "Deacon," ଆମ୍ଭମାନଙ୍କ ଭାଷାରେ "ସେବକ, ପରିଚାରକ, ପରିଦର୍ଶକ ଓ ଦିକନ" ଇତ୍ୟାଦି । ସାଧାରଣତଃ ପ୍ରେରିତଗଣର ଏବଂ ଶିକ୍ଷକମାନଙ୍କ କାର୍ଯ୍ୟପଦ୍ଧତିକ ପରିଚର୍ଯ୍ୟା ବା ସେବା (Ministry ମିନିଷ୍ଟ୍ରି) କିମ୍ବା Deaconship ଅର୍ଥରୁ ଦିକନତ୍ୱ ବା ସେବକତ୍ୱ ବୋଲାଯାଏ । ପ୍ରେ ୧; ୧୭, ୨୫ । ଏଫି ୪; ୧୨ । ପାଉଲ ଅନେକ ସମୟରେ ଆପଣାକୁ "ସେବକ" ବା ଦିକନ ବୋଲି ପରିଚୟ ଦେଇଥିଲେ । କଲ ୧; ୨୩ ଏଫି ୩; ୭ । ପାଉଲ ଯିରୂଶାଲମସ୍ଥ ଧନହୀନ ସାଧୁମାନଙ୍କ ନିମନ୍ତେ ଭିକ୍ଷା ଗ୍ରହଣ କରିବା ସମୟରେ "ସେବକ" ବା ଦିକନର କାର୍ଯ୍ୟ କରିଥିଲେ । ରୋମୀ ୧୫; ୨୫ । ତୀମଥି ଓ ଇରାସ୍ତ ପାଉଲଙ୍କ ପାଇଁ

ଦକନପର "ସେବକ କାର୍ଯ୍ୟ" ନିର୍ବାହ କରିବାକୁ ଅଦୃଷ୍ଟ ହୋଇଥିଲେ । ପ୍ରେ ୧୯; ୨୨ ।

୧୭ ପ୍ର । ସୁସମାଚାର-ପ୍ରଚାରକମାନେ କିଏ ଥିଲେ ?

ଉତ୍ତର । ମଣ୍ଡଳୀମାନଙ୍କର ସମ୍ବାଦବାହକ ବା ପ୍ରେରିତ ଦୂତ ଥିଲେ, ଯେଉଁଠାରେ ସୁସମାଚାର ଜଣା ଯାଇ ନ ଥିଲା, ସେହି ସ୍ଥାନରେ ତାହା ପ୍ରଚାର କରିବାକୁ, ଏବଂ ମଣ୍ଡଳୀର ସହଭାଗିତାରେ ବିଶ୍ୱାସକାରୀମାନଙ୍କୁ ଏକତ୍ର କରି- ବାକୁ ସେମାନଙ୍କଦ୍ୱାରା ପ୍ରେରିତ ହୋଇଥିଲେ । ପ୍ରେ ୨୧; ୮ । ୨ କରି ୮; ୨୩ । ଫିଲି ୨; ୨୫ ।

୧୮ ପ୍ର । ଆମ୍ଭେମାନେ କେଉଁ ନିୟମ ଅନୁସାରେ ମଣ୍ଡଳୀ ମଧ୍ୟରେ ସେବା କାର୍ଯ୍ୟ ସାଧନ କରିବା ବିହିତ ?

ଉତ୍ତର । ଆମ୍ଭମାନଙ୍କ ଉପାୟ ଓ ଶକ୍ତିର ପରିମାଣ, ଅଥବା ଈଶ୍ୱରଙ୍କ ଦାନ ଓ ଅନୁଗ୍ରହ ଅନୁସାରେ । ୧ପି ୪; ୧୦ । ରୋମୀ ୭; ୧୦ । ୧କରି ୧୨ । ୧କରି ୧୪ ।

୧୯ ପ୍ର । କିପ୍ରକାରେ ମଣ୍ଡଳୀର କର୍ମକାରୀମାନେ ନିର୍ବାଚିତ ହେବା ଉଚିତ ?

ଉତ୍ତର । ସେମାନେ ଯେଉଁମାନଙ୍କ ନିମନ୍ତେ ସେବାକାର୍ଯ୍ୟ ସାଧନ କରିବେ, ସେହି ମଣ୍ଡଳୀର (ମୁକ୍ତିକଶ୍ଚ ବା) ସମ୍ମତି ଦ୍ୱାରା । ହେଉ, ସମୁଦାୟ ମଣ୍ଡଳୀର ନିର୍ବାଚନଦ୍ୱାରା ଯିହୁଦାର ପଦରେ ଅନ୍ୟ ଜଣକର ନିଯୋଗ ହୋଇଥିଲା । ପ୍ରେ ୧; ୧୫-୨୬ । ଯିରୂଶାଲମରେ "ଶିଷ୍ୟସମୂହ ଦ୍ୱାରା" ଦକନ-

ମାନେ 'ମନୋନୀତ ହୋଇଥିଲେ । ପ୍ରେ ୬; ୧-୬ । ଯେଉଁ ଭ୍ରାତା ମାକଦୋନୀୟା ମଣ୍ଡଳୀଗଣର ଦାନ ସଂଗ୍ରହ ଓ ବିତରଣ କାର୍ଯ୍ୟରେ ପାଉଲଙ୍କର ସଙ୍ଗ ହୋଇଥିଲେ, ସେ ସେହି କାର୍ଯ୍ୟ ନିମନ୍ତେ ମଣ୍ଡଳୀଗଣ ଦ୍ୱାରା ମନୋନୀତ ହୋଇଥିଲେ । ୨କର ୮; ୧୯ । ଲୁସ୍ତ୍ରା, ଦର୍ବୀ, ଇକନୀୟା ନଗରସ୍ଥ ମଣ୍ଡଳୀମାନଙ୍କରେ "ପ୍ରାଚୀନମାନେ" ହସ୍ତନିର୍ଦ୍ଦେଶ ବା ସମ୍ମତି ଦ୍ୱାରା ମନୋନୀତ ହୋଇଥିଲେ । ପ୍ରେ ୧୪; ୨୩ । ଏଠାରେ (ordained) ଏହି ଶବ୍ଦ ଭାଷାନ୍ତରିତ ହୋଇଅଛି, "ହସ୍ତାନିର୍ଦ୍ଦେଶ," ଅର୍ଥାତ୍ "ସମ୍ମତିର ଅଭିପ୍ରାୟରେ ହସ୍ତ ବିସ୍ତାର କରିବାର," ଏବଂ ଏରୂପ ବ୍ୟବହାର ଆଥେନୀୟ "ସଭ୍ୟମାନଙ୍କରେ" ସମ୍ମତି ପ୍ରକାଶ ସମ୍ବନ୍ଧରେ ପ୍ରଚଳିତ ଥିଲା ।

୨୦ ପ୍ର । କାହାଦ୍ୱାରା ବିଶପ ବା ପାଳକମାନେ ଠିଆପୋଷିତ ହେବା ଉଚିତ ?

ଉତ୍ତର । ଯେଉଁମାନଙ୍କ ଉପରେ ସେମାନେ ଅଧ୍ୟକ୍ଷତା କରନ୍ତି, ସେହି ମଣ୍ଡଳୀଗଣ ଓ ଜନସମାଜଦ୍ୱାରା, "ଯେ ବାକ୍ୟରେ ଉପଦେଶ ପାଏ, ସେ ଉପଦେଶକକୁ ସବୁ ଉତ୍ତମ ପଦାର୍ଥ ଭାଗ କରି ଦେଉ ।" ଗାଲା ୬; ୬ । "ଯେବେ ଆମ୍ଭେମାନେ ତୁମ୍ଭମାନଙ୍କ ନିମନ୍ତେ ପାରମାର୍ଥିକ ବୀଜ ବପନ କରିଅଛୁଁ, ତେବେ ତୁମ୍ଭମାନଙ୍କ

ସାଂସାରିକ ଶସ୍ୟର ଭାଗୀ ହେବା କି ବଡ଼ କଥା ?”
“ଯେଉଁମାନେ ମଙ୍ଗଳସମାଚାର ଘୋଷଣା କରନ୍ତି, ସେ-
ମାନଙ୍କ ଜୀବନୋପାୟ ମଙ୍ଗଳସମାଚାର ହିଁ ଅଟଇ, ଏହା
ପ୍ରଭୁ ନିରୂପଣ କରିଅଛନ୍ତି ।” ୧କରି ୯ ; ୧୧-୧୪ ।

୨୧ ପ୍ର । ପୁରାତନ ନିୟମାନୁସାରେ କେଉଁ ଧାରାରେ ଧର୍ମସେବା
ଉଦ୍ଦେଶରେ ଧନ ଦାନ କରାଯିବା ଉଚିତ ?

ଉତ୍ତର । ପ୍ରଭୁଙ୍କ ଉଦ୍ଦେଶରେ ସ୍ୱଚ୍ଛନ୍ଦଚିତ୍ତରେ ଉତ୍ସର୍ଗ କରିବା
ଉଚିତ । ଯାତ୍ରା ୩୫ ; ୪, ୫, ୨୧ । ୧ବଂଶା ୨୯ ;
୬, ୯, ୧୪, ୧୭ । ଏଜ୍ରା ୧ ; ୪ । ୩ ; ୫ ।

୨୨ ପ୍ର । ପୁରାତନ ନିୟମୋକ୍ତ ଦଶମାଂଶ ଦାନ କି ଥିଲା ?

ଉତ୍ତର । ଈଶ୍ୱରୀୟ ଆଜ୍ଞାର ନିରୂପଣାନୁଯାୟୀ ପ୍ରଭୁଙ୍କ ଉଦ୍ଦେ-
ଶରେ ମୂଳଧନର ଦଶମାଂଶ । “ତୁମ୍ଭେ ଆମ୍ଭକୁ ଯାହା-
କିଛି ଦେବ, ତହିଁର ଦଶମ ଭାଗ ଆମ୍ଭେ ତୁମ୍ଭକୁ
ଅବଶ୍ୟ ଦେବା ।” ଆଦି ୨୮ ; ୨୨ । ଲେବି ୨୭ ;
୩୦ । ମଲ୍ଲି ୩ ; ୮ ଦେଖ ।

୨୩ ପ୍ର । ଦାନସମ୍ବନ୍ଧରେ ନୂତନନିୟମର ବିଧାନ କି ?

ଉତ୍ତର । ପ୍ରତିଜଣ ଅନିଚ୍ଛୁକଭାବରେ ନ କରି ଆପଣା ମନର
ନିରୂପଣାନୁସାରେ ପ୍ରୟୋଜନ ପ୍ରମାଣେ ଦାନ କରୁ ;
ଯେହେତୁ ପରମେଶ୍ୱର ସ୍ୱଚ୍ଛନ୍ଦ ଦାତାକୁ ପ୍ରେମ କରନ୍ତି ।
୨କରି ୮ ; ୨-୪, ୧୨ । ୯ ; ୭ ।

୨୪ ପ୍ର । ପ୍ରେରିତ ପାଉଲଙ୍କ ଅନୁରୋଧମତେ ସରଳ ମନରେ

ଧାରାବାହିକ ଦାନ କରିବାକୁ କି କୌଣସି ଉପାୟ ସ୍ଥିର ଥିଲା?

ଉତ୍ତର । ହଁ, ମଣ୍ଡଳୀର ସେବାକାର୍ଯ୍ୟ ସାଧନ ନିମନ୍ତେ ପ୍ରତି ସପ୍ତାହ ଆପଣା ଆୟର ଏକ ଅଂଶ ଅଲଗା ରଖିବାକୁ କୁହା ଯାଇଥିଲା । "ତୁମ୍ଭେମାନେ ପ୍ରତ୍ୟେକେ ଈଶ୍ୱରଦତ୍ତ ଅର୍ଜ୍ଜନ ଅନୁସାରେ ଧନ ସଞ୍ଚୟ କରି ସପ୍ତାହର ପ୍ରଥମ ଦିନରେ ଆପଣା ନିକଟରେ କିଛି ରଖ ।" ୧କରି ୧୬; ୨ ।

୨୫ ପ୍ର । ପ୍ରେରିତତ୍ୱପଦର କାର୍ଯ୍ୟପଦ୍ଧତି କି ଥିଲା ?

ଉତ୍ତର । ପ୍ରେରିତମାନେ ଖ୍ରୀଷ୍ଟଙ୍କର ସାକ୍ଷାତ ସାକ୍ଷୀ ଥିଲେ, ସେମାନେ ବିଶେଷ ଓ ଆଶ୍ଚର୍ଯ୍ୟ କ୍ଷମତାରେ ଭୂଷିତ ହୋଇ ସୁସମାଚାର ପ୍ରଚାର ନିମିତ୍ତ ପ୍ରେରିତ ହୋଇଥିଲେ । "ତୁମ୍ଭେମାନେ ଏହି ସମସ୍ତ ବିଷୟର ସାକ୍ଷୀ ଅଟ ।" ଲୂକ ୨୪; ୪୮ । ପ୍ରେ ୧; ୨୧, ୨୨ । ୨; ୩୨ । ୧୦; ୩୯ । ୧ପି ୫; ୧ । ସେପରି ପାଉଲ, "ଅମ୍ଭେ କି ପ୍ରେରିତ ନୋହୁଁ? ଅମ୍ଭେ କି ଆମ୍ଭମାନଙ୍କ ପ୍ରଭୁ ଯୀଶୁ ଖ୍ରୀଷ୍ଟଙ୍କୁ ଦର୍ଶନ କରିନାହୁଁ?" ୧କରି ୯; ୧, ୨ । "ପ୍ରେରିତମାନଙ୍କ ଦ୍ୱାରା ଆଶ୍ଚର୍ଯ୍ୟକର୍ମ ଓ ଲକ୍ଷଣ ପ୍ରକାଶିତ ହୋଇଥିଲା ।" ପ୍ରେ ୨; ୪୩ । ମାର୍କ ୧୬; ୧୭, ୧୮ । ପ୍ରେ ୫; ୧୨, ୧୬ ଦେଖ ।

୨୨ ପ୍ର । କହେତୁ ପ୍ରେରିତଙ୍କ ପଦର ଛଳନାକାରି ଲୋକ-
ମାନଙ୍କ ଅଧିକାର ଅମୂଳକ ଓ ଅନୁଚିତ ?

ଉତ୍ତର । କାରଣ ଖ୍ରୀଷ୍ଟଙ୍କ ଜୀବନ, ମରଣ ଓ ଉତ୍ଥାନର ଚକ୍ଷୁଷ
ପ୍ରମାଣ ପୁରୁଷାନୁକ୍ରମେ ପୁନଃ୨ ସମ୍ଭବ ନ ପାରେ,
ଏବଂ ଆଶ୍ଚର୍ଯ୍ୟକର୍ମକାରିଣୀ ଶକ୍ତିର ଦାନ ପ୍ରେରିତ-
ମାନଙ୍କ ସମୟ ସ୍ଥିର କରିଦ ହେଲା ।

୨୨ ପ୍ର । ବିଷପ ବା ପ୍ରେରିତମାନେ କି ମଣ୍ଡଳୀମାନଙ୍କରେ
ସ୍ୱାଧୀନ କ୍ଷମତା ଚଳାଇଥିଲେ ?

ଉତ୍ତର । ସେମାନେ ସେପରି କରିବାକୁ ପ୍ରକାଶରୂପେ ନଷେ-
ଧିତ ହୋଇଥିଲେ, ଏବଂ ସେମାନେ ଆପଣା୨କୁ ସେବକ
ଓ ଉପକାରକ ବୋଲି ସ୍ୱୀକାର କରିଥିଲେ, କିନ୍ତୁ
ଭ୍ରାତୃବର୍ଗର ପ୍ରଭୁ ବୋଲି ପରିଚୟ ଦେଇ ନ ଥିଲେ ।
ଆମ୍ଭମାନଙ୍କ ପ୍ରଭୁ କହିଅଛନ୍ତି, "ଅନ୍ୟଦେଶୀୟ
ଲୋକଙ୍କ ରାଜାମାନେ ସେମାନଙ୍କ ଉପରେ କର୍ତ୍ତୃତ୍ୱ
କରନ୍ତି, ପୁଣି ବଡ଼୨ ଲୋକମାନେ ସେମାନଙ୍କର ଶାସନ
କରନ୍ତି; କିନ୍ତୁ ତୁମ୍ଭମାନଙ୍କ ମଧ୍ୟରେ ସେରୂପ ହେବ
ନାହିଁ, ତୁମ୍ଭମାନଙ୍କ ମଧ୍ୟରେ ଯେକେହି ବଡ଼ ହେବାକୁ
ଚାହିଁଇ, ସେ ତୁମ୍ଭମାନଙ୍କର ସେବକ ହେଉ ।" ମାଥି
୨୦; ୨୫, ୨୬ । "ଈଶ୍ୱରଙ୍କ ଅଧିକାର ଉପରେ
ପ୍ରଭୁତ୍ୱ ନ କରି ପଲର ଦୃଷ୍ଟାନ୍ତସ୍ୱରୂପ ହୁଅ ।" ୧ପି
୫; ୩ । "ପାଉଲ କେ ? ଆପଲ୍ଲ କେ ? ସେମାନେ

ତୁମ୍ଭମାନଙ୍କର ବିଶ୍ୱାସପାତ୍ର ସେବକମାତ୍ର । ପାଉଲ
କି ଅପଲ୍ଲ କି କୈଫା ସମସ୍ତ ବିଷୟ ତୁମ୍ଭମାନଙ୍କର
ଅଟଇ ।" ୧ କରି ୩; ୫, ୨୧, ୨୨ । "ତୁମ୍ଭମାନଙ୍କ
ବିଶ୍ୱାସ ଉପରେ ଅମ୍ଭେମାନେ ରାଜତ୍ୱ କରୁଁ, ତାହା
ନୁହେ, ମାତ୍ର ତୁମ୍ଭମାନଙ୍କ ଆନନ୍ଦର ସାହାଯ୍ୟକାରୀ
ଅଟୁଁ ।" ୨ କରି ୧; ୨୪ ।

---

## ପଞ୍ଚମ ଅଧ୍ୟାୟ । ରାଜ୍ୟ ଓ ମଣ୍ଡଳୀ ।

୧ ପ୍ର । ରାଜକୀୟ କ୍ଷମତାର ତତ୍ତ୍ୱ କି?

ଉତ୍ତର । ପ୍ରାଣ, ମନୁଷ୍ୟ ଓ ସମ୍ପତ୍ତି ରକ୍ଷା କରିବାର, ଏବଂ
ସାମାଜିକ ପ୍ରଣାଳୀ ସ୍ଥାପନ କରିବାର ।

୨ ପ୍ର । ସୀମାରେ ନିଯୁକ୍ତ କରିବା ନିମନ୍ତେ କେବେ୨ କେଉଁ
ବଳର ଅବଶ୍ୟକ ହୋଇପାରେ?

ଉତ୍ତର । ସିପାହୀଦଳ ଓ ଖଡ୍ଗହସ୍ତ ସୈନ୍ୟଗଣ । "ଯେହେତୁ
ସେ ବୃଥାରେ ଖଡ୍ଗ ଧାରଣ ନ କରେ ।" ରୋମୀ
୧୩; ୪ ।

୩ ପ୍ର । ରାଜକୀୟ କ୍ଷମତା ମାନ୍ୟ କରିବାକୁ ନୂତନ ନିୟମରେ
କିପରି ଶିକ୍ଷା ପାଉଅଛୁଁ ?

ଉତ୍ତର । କୁକର୍ମକାରୀମାନଙ୍କ ଦଣ୍ଡବିଧାନ, ଓ ସୁକର୍ମକାରୀମାନଙ୍କ
ପ୍ରଶଂସାବାଦ ନିମିତ୍ତ ଈଶ୍ୱରଙ୍କଠାରୁ ନିରୂପିତ ।
ରୋମୀ ୧୩; ୩, ୪ । ୧ପି ୨; ୧୪ ।

୪ ପ୍ର । ଅମ୍ଭେମାନେ କିଉପେ ତାହା ସାଧନ କରିବାକୁ ଶିକ୍ଷା ପାଇଅଛୁଁ ?

ଉତ୍ତର । ଧର୍ମସମ୍ବନ୍ଧୀୟ କର୍ତ୍ତବ୍ୟ କାର୍ଯ୍ୟ ପର । "ପ୍ରଭୁଙ୍କ-ସଙ୍କାଶେ," ଏପି ୬; ୧୩ । "କେବଳ କ୍ରୋଧ ସଙ୍କାଶୁ ନୁହେ, କିନ୍ତୁ ବିବେକ ସକାଶୁ ବଶୀଭୂତ ହେବା ଉଚିତ ।" ରୋମୀ ୧୩; ୫ ।

୫ ପ୍ର । ଅନ୍ୟାୟ ଓ ଦୌରାତ୍ମ୍ୟ ପ୍ରତିକୂଳରେ ରାଜକୀୟ କ୍ଷମତାର କର୍ତ୍ତୃତ୍ୱ ସମ୍ବନ୍ଧରେ ଅମ୍ଭେମାନେ ନୂତନ ନିୟମରେ କି ଉଦାହରଣ ପାଇଅଛୁଁ ?

ଉତ୍ତର । ପାଉଲଙ୍କର ଉଦାହରଣ, ସେ ଅନ୍ୟାୟି ଓ ନିଷ୍ଠୁର ବିଚାରକର୍ତ୍ତା ହାତରେ ରୋମୀୟ ଲୋକପର ଆପଣା ମୁକ୍ତିର ଦାବି କରିଥିଲେ; ପ୍ରେ ୧୬; ୩୭, ୩୯ । ୨୨; ୨୫–୨୯ । ୨୫; ୧୧, ୧୨ ।

୬ ପ୍ର । ଧର୍ମସମ୍ବନ୍ଧରେ ଖ୍ରୀଷ୍ଟୀୟାନ ଲୋକମାନେ ବିଚାରକର୍ତ୍ତାର ଆଜ୍ଞା ଅବଜ୍ଞା କରିବା ବିଷୟରେ କି ଦୃଷ୍ଟାନ୍ତ ଅଛି ?

ଉତ୍ତର । ପିତରେ ଓ ଯୋହନର ଉଦାହରଣ, ସେମାନେ ଯୀଶୁଙ୍କ ନାମରେ କିଛି କଥା ନ କହିବାକୁ ବା ଶିକ୍ଷା ନ ଦେବାକୁ ଆଜ୍ଞା ପାଇ ନିଷେଧିତ ହୋଇଥିଲେ । ପ୍ରେ ୪; ୧୮–୨୦ ।

୭ ପ୍ର । ସେମାନଙ୍କ ନିଷେଧ ନ ମାନିବା ନିମନ୍ତେ କେଉଁ ହେତୁ-ବାଦ ସ୍ଥିର କରିଥିଲେ ?

ଉତ୍ତର । "ମନୁଷ୍ୟମାନଙ୍କ ଅପେକ୍ଷା ଈଶ୍ୱରଙ୍କ ଆଜ୍ଞା ପାଳନ କରିବା ଉଚିତ ।" ପ୍ରେ ୫; ୨୮, ୨୯ ।

୮ ପ୍ର । କିନ୍ତୁ ଆମ୍ଭେମାନେ କି ରାଜକୀୟ କ୍ଷମତାକୁ ଈଶ୍ୱର-ନିରୂପିତ ବୋଲି ମାନ୍ୟ କରିବାକୁ ସ୍ପଷ୍ଟ ଆଜ୍ଞା ପାଇନାହୁଁ ?

ଉତ୍ତର । ହଁ, ପ୍ରତ୍ୟେକଣ ଶାସନପଦର ବଶୀଭୂତ ହେବା ଆବଶ୍ୟକ, ଯେଉଁ ଜନ ଶାସନପଦର ବିରୁଦ୍ଧାଚରଣ କରଇ, ସେ ଈଶ୍ୱରଙ୍କ ନିରୂପିତ ଆଜ୍ଞା ବିରୁଦ୍ଧରେ ଆଚରଣ କରଇ । ରୋମୀ ୧୩; ୧, ୨ ।

୯ ପ୍ର । ତେବେ ଅନାଜ୍ଞାବହତା ପକ୍ଷରେ ପିତର କେଉଁ ହେତୁବାଦ ଦେଇଅଛନ୍ତି ?

ଉତ୍ତର । ମନୁଷ୍ୟର ବା ମନୁଷ୍ୟସମୂହର ଯେ କୌଣସି ଦାବି ଥାଉପଛେ ଈଶ୍ୱର ଓ ବିବେକ ସମ୍ବନ୍ଧୀୟ ବିଷୟ ଉପରେ କୌଣସି ଉଚିତ କର୍ତ୍ତୃତ୍ୱ ନାହିଁ ।

୧୦ ପ୍ର । ଧର୍ମସମ୍ବନ୍ଧରେ ରାଜାର ସ୍ଥିରୀକୃତ ବ୍ୟବସ୍ଥା ଅସ୍ୱୀକାର କରିବା ବିଷୟରେ ପୁରାତନ ନିୟମରେ କେଉଁ ବିଶ୍ୱାସଯୋଗ୍ୟ ଆଦର୍ଶ ପ୍ରଦତ୍ତ ଅଛି ?

ଉତ୍ତର । ଦାନିୟେଲଙ୍କର ଉଦାହରଣ, ସେ ସତ୍ୟମୟ ପରମେଶ୍ୱରଙ୍କ ନିକଟରେ ପ୍ରାର୍ଥନା କରିବାକୁ ନିରସ୍ତ ହୋଇ ନ ଥିଲେ । ଏବଂ ତାଙ୍କର ତିନି ମିତ୍ରଙ୍କ ବିଷୟରେ, ଯେଉଁମାନେ ରାଜାଙ୍କରେ ଗଢ଼ା ମିଥ୍ୟା

ଦେବତା ଅଗରେ 'ଦଣ୍ଡ ପ୍ରଣାମ' କର' ନ ଥିଲେ । ଦାନି ୬; ୭, ୧୦ । ୩; ୧-୧୮ ।

୧୧ ପ୍ର । ପରମେଶ୍ୱର କି ସେମାନଙ୍କ ଆଚରଣ ପସନ୍ଦ ଓ ସମାଦର କରୁଥିଲେ ?

ଉତ୍ତର । ହଁ, ସେ ଦାନିୟେଲଙ୍କୁ ସିଂହ ଗହ୍ୱର ମଧ୍ୟରେ ରକ୍ଷା କରୁଥିଲେ, ଏବଂ ଶଦ୍ରକ୍, ମେଶକ୍ ଓ ଅବେଦନଗୋଙ୍କୁ ପ୍ରଜ୍ୱଳିତ ଅଗ୍ନି କୁଣ୍ଡ ମଧ୍ୟରୁ ଉଦ୍ଧାର କରୁଥିଲେ, ଯହିଁରେ ସେମାନେ ଦେବପୂଜାର ମତ ଅସ୍ୱୀକାର କରିବା ହେତୁ ନିକ୍ଷିପ୍ତ ହୋଇଥିଲେ । ଦାନି ୬; ୨୧, ୨୨ । ୩; ୨୫-୨୮ ।

୧୨ ପ୍ର । ରାଜଶାସନ ପ୍ରଣାଳୀ ଓ ଧର୍ମ ଉଭୟ ମଧ୍ୟରେ ସ୍ପଷ୍ଟ ପ୍ରଭେଦ ଥିବା ସମ୍ବନ୍ଧରେ ଆମ୍ଭମାନଙ୍କ ପ୍ରଭୁ କି ଶିକ୍ଷା ଦେଇଅଛନ୍ତି ?

ଉତ୍ତର । "କାଇସରର ଯାହା, ତାହା କାଇସରକୁ ଦିଅ; ଆଉ ଈଶ୍ୱରଙ୍କର ଯାହା, ତାହା ଈଶ୍ୱରଙ୍କୁ ଦିଅ ।" ମାଥି ୨୨; ୨୧ ।

୧୩ ପ୍ର । ଆମ୍ଭମାନଙ୍କ ପ୍ରଭୁ ଆପଣା ରାଜ୍ୟର ପାରମାର୍ଥିକ ଅବସ୍ଥା ବିଷୟରେ କେଉଁ ସଂକ୍ଷିପ୍ତ ବର୍ଣ୍ଣନା ବ୍ୟକ୍ତ କରିଅଛନ୍ତି ?

ଉତ୍ତର । "ଆମ୍ଭର ରାଜ୍ୟ ଏହି ଜଗତ-ସମ୍ବନ୍ଧୀୟ ନୁହେ ।" ଯୋହ ୧୮; ୩୬ ।

୧୪ ପ୍ର । ମଧ୍ୟ, ରାଜକୀୟ କ୍ଷମତାର ଖଡ୍ଗ ଆପଣା ରାଜ୍ୟରେ ଅବ୍ୟବହାର୍ଯ୍ୟ ବୋଲି ଆମ୍ଭମାନଙ୍କ ପ୍ରଭୁ କେଉଁ ମାର୍ଗରେ ପ୍ରକାଶ କରନ୍ତି ?

ଉତ୍ତର । ସେ କହନ୍ତି, ଯେବେ "ଆମ୍ଭର ରାଜ୍ୟ ଏ ଜଗତ-ସମ୍ବନ୍ଧୀୟ ହୋଇଥାନ୍ତା, ତେବେ ଆମ୍ଭେ ଯେମନ୍ତ ଯିହୁଦୀୟମାନଙ୍କ ହସ୍ତଗତ ନୁହନ୍ତୁ, ଏଥିପାଇଁ ଆମ୍ଭର ସେବକମାନେ ଯୁଦ୍ଧ କରନ୍ତେ, ମାତ୍ର ଆମ୍ଭର ରାଜ୍ୟ ଐହିକ ନୁହେ ।" ଯୋ ୧୮; ୩୬ ।

୧୫ ପ୍ର । ଏଥିରୁ କି ଗୁରୁତର ତତ୍ତ୍ୱ ପ୍ରକାଶିତ ହୋଇଅଛି ?

ଉତ୍ତର । ଖ୍ରୀଷ୍ଟଙ୍କ ମତରେ ଆମ୍ଭମାନଙ୍କ ପ୍ରଭୁଙ୍କ ରାଜ୍ୟ ମନୁଷ୍ୟମାନଙ୍କ ରାଜ୍ୟଠାରୁ ଭିନ୍ନ ପ୍ରକାର । ୨ କରି ୬; ୧୪, ୧୫ ବିବେଚନା କର ।

୧୬ ପ୍ର । ଦୁଇ ରାଜ୍ୟ ମଧ୍ୟରେ କେଉଁ ପ୍ରଧାନ ଓ ମୌଳିକ ପ୍ରଭେଦ ସେମାନଙ୍କ ଐକ୍ୟକୁ ଅନୁପଯୁକ୍ତ ଓ ଅସଙ୍ଗତି ବୋଲି ପ୍ରତିପନ୍ନ କରେ ?

ଉତ୍ତର । ମଣ୍ଡଳୀ ଖ୍ରୀଷ୍ଟଙ୍କ ପ୍ରକାଶିତ ଶିଷ୍ୟମାନଙ୍କର ସମଷ୍ଟି ଅଟେ, ପାରମାର୍ଥିକ ଅଭିପ୍ରାୟରେ ଏକୀଭୂତ, ଏବଂ ଈଶ୍ୱରୀୟ ବ୍ୟବସ୍ଥା ଦ୍ୱାରା ଶାସିତ; ରାଜ୍ୟ ଦେଶୀୟମାନଙ୍କର ସମଷ୍ଟି ଅଟେ, ସାଂସାରିକ ଓ ପାର୍ଥିବ ଅଭିପ୍ରାୟରେ ସଂଗଠିତ, ଏବଂ ମାନୁଷିକ ବ୍ୟବସ୍ଥା ଦ୍ୱାରା ଶାସିତ ।

୧୭ ପ୍ର । କିନ୍ତୁ ରାଜକୀୟ ଶାସକର କି ଏରୂପ ଧର୍ମ ସମ୍ବନ୍ଧୀୟ କର୍ତ୍ତବ୍ୟତା ନାହିଁ ?

ଉତ୍ତର । ନିଶ୍ଚୟ; ରାଜା ଓ ଶାସନକର୍ତ୍ତାମାନେ ଈଶ୍ୱର ପରାୟଣ ଓ ଖ୍ରୀଷ୍ଟିୟାନ ମନୁଷ୍ୟ ହେବା ଉଚିତ, ଈଶ୍ୱରଙ୍କ ମଣ୍ଡଳୀ ପ୍ରତି ସେମାନଙ୍କର ଶାସନ ଯଥାର୍ଥ ଓ ଅନୁକୂଳ ହେବା ଆବଶ୍ୟକ; କିନ୍ତୁ ସେମାନଙ୍କ ଆଧିପତ୍ୟ ଓ ରାଜତ୍ୱ ଦେଶ ସମ୍ବନ୍ଧୀୟ, ମଣ୍ଡଳୀ ସମ୍ବନ୍ଧୀୟ ନୁହେ । ୨ ଶାମୁ ୨୩; ୩ । ଯିଶା ୪୯; ୨୩ । ୬୦; ୧୬ ।

୧୮ ପ୍ର । ମଣ୍ଡଳୀ ଓ ଦୈହିକ ରାଜ୍ୟର ମିଳନରୁ କେଉଁ ଫଳ ଜାତ ହୋଇଅଛରେ ?

ଉତ୍ତର । ମଣ୍ଡଳୀର ଭ୍ରଷ୍ଟତା, ଏବଂ ପାରମାର୍ଥିକ ଜୀବନ ଓ ଶକ୍ତିର ହ୍ରାସ ।

୧୯ ପ୍ର । ଏରୂପ ସମ୍ବନ୍ଧ କପଟର ଧର୍ମଗତ ବିଶ୍ୱାସ ଓ ଅଧ୍ୟବସାୟର ବିଘ୍ନଜନକ କି ?

ଉତ୍ତର । ଏହା ମହି ରାଜସଭାର ପକ୍ଷେ, ଏବଂ ମନୁଷ୍ୟମାନଙ୍କ ମତ ଓ ନିଷ୍ପତ୍ତି ଦ୍ୱାରା ବିବେକକୁ ଆକ୍ରମଣ କରେ; କେବେ୨ ଅଧାର୍ମିକ ଲୋକଙ୍କ ବିଷୟରେ ବିବେକ ପ୍ରପୀଡ଼ିତ ହୁଏ; ସୁତରାଂ ଖ୍ରୀଷ୍ଟଙ୍କ ଅଧିକାର ବୈପରୀତ୍ୟ ଘଟେ । ( ୧ ଅଧ୍ୟାୟ ଦେଖ । )

୨୦ ପ୍ର । କଉପେ ଏରୂପ ସମ୍ବନ୍ଧ ମଣ୍ଡଳୀର ଅବସ୍ଥା ବଳୁତ କରେ ?

ଉତ୍ତର । ଏହା ମଣ୍ଡଳୀକ ପାରମାର୍ଥିକ ରାଜ୍ୟ ପରିବର୍ତ୍ତରେ ଗୋଟିଏ ଲାଗଡକ ଓ ରାଜକୀୟ କାର୍ଯ୍ୟବିଭାଗରେ ପରିଣତ କରେ, ଏବଂ ସୁସମାଚାର ପ୍ରଚାରକ ବଦଳେ ସର୍ବଦା ଯାଜକମାନଙ୍କୁ ନିଯୁକ୍ତ କରେ, ଏବଂ ଯାଜକମାନଙ୍କ ପରିବର୍ତ୍ତରେ ରାଜକୀୟ ଧର୍ମାଧ୍ୟକ୍ଷ, ଓ ଖ୍ରୀଷ୍ଟଙ୍କ ସ୍ଥାନରେ ଜଣକୁ ପାର୍ଥିବ ସର୍ବାଧିକାରୀରୂପେ ସ୍ଥାପନ କରେ ।

ଉଦାହରଣ ।—ଇଙ୍ଗଣ୍ଡ ମଣ୍ଡଳୀରେ (Church of England) ଉଚିତ ମଣ୍ଡଳୀ-ନିୟମ ନାହିଁ; ସାଧାରଣ ପ୍ରାର୍ଥନାପୁସ୍ତକର ଶିକ୍ଷାନୁସାରେ ଜୁବନ ସମ୍ବନ୍ଧୀୟ ପୁନର୍ଜନ୍ମବିଷୟକ ଶିକ୍ଷାର ଅନକାର୍ଯ୍ୟ ଭ୍ରାନ୍ତ ସଂସ୍କାରୁ ପରିମଜନ-କାର୍ଯ୍ୟ ବ୍ୟବହାରରେ ଅଛାଡ; ମଣ୍ଡଳୀ ଓ ସଂସାର ମିଶ୍ରିତ ହୋଇଅଛୁ; ଏରୂପେ ବିଷପମାନେ କୁଳୀନମାନଙ୍କ ସଭାରେ ଅସନ ଅଧିକାର କରନ୍ତି; ମହାରାଣୀ ମହାସଭାର ପରାମର୍ଶ ଦ୍ୱାରା ମଣ୍ଡଳୀର ସର୍ବାଧିକାରିଣୀସ୍ୱରୂପ ହୋଇଅଛନ୍ତି ।

୨୧ ପ୍ର । କଉପେ ଏପ୍ରକାର ସମ୍ବନ୍ଧ ମଣ୍ଡଳୀ-ଶାସନର ବିନାଶକ ହୁଏ ?

ଉତ୍ତର । ଏହା ମଣ୍ଡଳୀକ ଦୈଶିକରାଜ୍ୟର ବଶୀଭୂତ କରେ, ମଣ୍ଡଳୀ-ଶାସନ ସଂକ୍ରାନ୍ତ କ୍ଷମତାକୁ ବାହ୍ୟବିଷୟ ପ୍ରତି ସ୍ଥାନାନ୍ତରିତ କରେ, ଏବଂ ଶାସ୍ତ୍ରୀୟ ଆଦେଶ ଓ ଶାସନକୁ ଅସଙ୍ଗତ କରି ଦିଏ ।

ଉଦାହରଣ ।—କୌଣସି ରାଜାଧୀନ ମଣ୍ଡଳୀ ମାଥି ୧୮; ୧୭, ଅବା ୨ ଥେସ ୩; ୬, ଲକ୍ଷିତ ବିଷୟ ଚଳାଇ ନ ପାରେ ।

୨୨ ପ୍ର । କିପ୍ରକାରେ ଏରୂପ ସମ୍ବନ୍ଧ ଧର୍ମୋପଦେଶକମାନଙ୍କ ଉପଯୁକ୍ତ ନିଯୁକ୍ତିରେ ହସ୍ତକ୍ଷେପ କରେ ?

ଉତ୍ତର । ଏହା ମଣ୍ଡଳୀମାନଙ୍କଠାରୁ ନିଜ ଧର୍ମୋପଦେଶକମାନଙ୍କୁ ମନୋନୀତ କରିବାର କ୍ଷମତା ହରଣ କରେ, ଏବଂ କେବେ୨ ତାହା ଅଯୋଗ୍ୟ ଓ ଅଧର୍ମିକ ଲୋକଙ୍କ ହସ୍ତରେ ନ୍ୟସ୍ତ କରେ ।

୨୩ ପ୍ର । କପରି ଏ ସମ୍ବନ୍ଧ ଖ୍ରୀଷ୍ଟୀୟ ଉପହାର ଓ ଉପଦେଶ ପାଳନର ପ୍ରତିବାଧକ ?

ଉତ୍ତର । ଏହି ସମ୍ବନ୍ଧ, ଯାହା ପାରମାର୍ଥିକ ଅବଶ୍ୟକତା ନୁସାରେ ସ୍ୱଚ୍ଛନ୍ଦରେ ଦିଆଯାଏ, ଓ କେବଳ ଈଶ୍ୱରଙ୍କ ଉଦ୍ଦେଶରେ ଗ୍ରହଣ କରାଯାଏ, ଏପରି ବିଷୟରେ ମାନୁଷିକ କ୍ଷମତା ଦେଖାଇ ବଳାତ୍କାର କରେ ।

ଉଦାହରଣ ।—ଦଶମାଂଶ ଓ ମଣ୍ଡଳୀ-କର ଦାନ ସବୁ ରାଜା

କାର୍ଯ୍ୟ କ୍ଷମତା ଦ୍ୱାରା ଦେୟ ହୁଏ, ଏବଂ ଅଇନର ଅନୁକ୍ରମ ଦ୍ୱାରା ପ୍ରାପ୍ୟ ହୁଏ ।

୨୪ ପ୍ର । ତେବେ ବାଇବଲ–ଖ୍ରୀଷ୍ଟିୟାନମାନଙ୍କର ଗୁରୁତର କର୍ତ୍ତବ୍ୟ କର୍ମ କି ?

ଉତ୍ତର । ଈଶ୍ୱରଙ୍କ ବାକ୍ୟର ଶିକ୍ଷା ସ୍ଥିର କରି ମାନ ନୂତନ ନିୟମାନୁଯାୟୀ ମଣ୍ଡଳୀଗଣ ମଧ୍ୟରେ ତାହା ଅଭ୍ୟାସ କରିବାର, ଏବଂ ମାନୁଷିକ ବ୍ୟବସ୍ଥାଦ୍ୱାରା ସ୍ଥାପିତ ଓ ଶାସିତ ବିଷୟରୁ ମଣ୍ଡଳୀ ପୃଥକ୍ ରହିବାର । ୨କର ୬; ୧୭ । ଯୋ ୧୭; ୧୬ । ପ୍ରେ ୫; ୨୮, ୨୯ ।

୨୫ ପ୍ର । ପ୍ରାର୍ଥନା କି? ଯହିଁରେ ସତ୍ୟ ଖ୍ରୀଷ୍ଟିୟାନ ସମସ୍ତେ ଏକୀଭୂତ ହୁଅନ୍ତି ।

ଉତ୍ତର । "ଯେମନ୍ତ ପ୍ରଭୁ ବାକ୍ୟରୂପ ଜଳ ପ୍ରକ୍ଷାଳନ ଦ୍ୱାରା ଆପଣା ମଣ୍ଡଳୀକି ଶୁଚି ଓ ପବିତ୍ର କରି ସମସ୍ତ କଳଙ୍କ ଝାନ୍ତାଦି ଦୋଷ ବିନା, ଆପଣା ନିକଟରେ ଏକ ତେଜସ୍ୱି-ମଣ୍ଡଳୀରୂପେ ଉପସ୍ଥିତ କରନ୍ତି," ଏଥିପାଇଁ ପ୍ରାର୍ଥନା କରିବା ଉଚିତ । ଏଫି ୫; ୨୬, ୨୭ ।

୨୬ ପ୍ର । ମଧ୍ୟ ଅମ୍ଭମାନଙ୍କର ସାଧାରଣ ଭରସା ଓ ବାଞ୍ଛା କି ?

ଉତ୍ତର । ଯେପରି ଏହି ଜଗତରେ ସମୁଦାୟ ରାଜ୍ୟ ଅମ୍ଭମାନଙ୍କ ପ୍ରଭୁଙ୍କର ଓ ତାଙ୍କ ଅଭିଷେକ୍ତଙ୍କର ହୁଅଇ; ଏବଂ ସେ ସଦାସର୍ବଦା ରାଜତ୍ୱ କରନ୍ତି, ଏହିମାତ୍ର ବାଞ୍ଛା ।

ଏପରି ହେଉ, ପ୍ରଭୁ ଯୀଶୁ ଆସନ୍ତୁ । ପ୍ରକା ୧୧; ୧୫ । ୨୨; ୨୦ ।

ସମାପ୍ତ ।

——:।:——

## ଗୀତ ।

କି ସୁନ୍ଦର ଦିଶେ ଦେଖ, ଯୀଶୁ ରାଜ ଭବନ ।
ମଣ୍ଡଳୀ ତାହାର ନାମ ସ୍ୱର୍ଗ ସମ ସଦନ । ଘୋଷା ।

ଅମଳିନ ଉପବନ ପୁଷ୍ପିତ ସଦା ନୂତନ ।
ଅନୁପମ ଫଳଧନ ସୁଖ ଶାନ୍ତି ଜୀବନ । ୧ ।

ବହେ ନିତ ସୁଧା ନୀର ପନ୍ଥତର ତୃଷା ହର ।
ସୁଧାତଟେ ତେଜସ୍କର ନିରନ୍ତର ଶୋଭନ । ୨ ।

ତହିଁ ସାଧୁ ହଂସଗଣ ବିହରନ୍ତି ଅନୁକ୍ଷଣ ।
ପିନ୍ଧି ପବିତ୍ର ଭୂଷଣ କରୁଥାନ୍ତି ଗାୟନ । ୩ ।

ହିଂସ୍ର ସଙ୍ଗେ ଯୀଶୁ ରାଜା ଠେକାଇ ବୀଣର ଧ୍ୱଜା ।
ବଜାଇ ମଙ୍ଗଳ ବାଜା ବାଜେ ଗର୍ଜେ ରାଜନ । ୪ ।

ପ୍ରେମମୟ ନରେଶ୍ୱର ପ୍ରେମେ କହ ତୁଣ୍ଡ ସ୍ୱର ।
ଡାକନ୍ତି ନିଜ ପାର୍ଶ୍ୱର ଆସ ଜନେ ବହନ । ୫ ।

ସୁନ୍ଦର ବା ଅସୁନ୍ଦର ଜ୍ଞାନୀ ଅଜ୍ଞାନ ପାମର ।
ହୁଅ ଯେହୁ କେହୁ ନର ବନ୍ଧାସରେ ଗମନ । ୬ ।

ପାପ ଚିହ୍ନ ପରିହର   ଯୀଶୁ ପଦଚିହ୍ନ ଧର ।
ଏକ ଲକ୍ଷ୍ୟେ ଲକ୍ଷ କର   ବେଗେ କର ଧାବନ । ୭ ।

କରିଲେ ତହିଁ ପ୍ରବେଶ   ହେବ ସବୁ ଦୁଃଖ ଶେଷ ।
ଭୋଗିବ ସୁଖ ଅଶେଷ   ପୂର୍ଣ୍ଣ ହେବ କାମନା । ୮ ।

“ପ୍ରଭୁ ଯୀଶୁ ଶିଷ୍ୟମାନଙ୍କୁ କହିଲେ, ତୁମ୍ଭେମାନେ ସମୁଦାୟ ଜଗତରେ ଯାଇ ପ୍ରତ୍ୟେକ ଲୋକଙ୍କ ନିକଟରେ ମଙ୍ଗଳସମାଚାର ଘୋଷଣା କର । ତହିଁରେ ଯେଉଁ ଜନ ବିଶ୍ୱାସ କରି ଡୁବିତ ହୁଅଇ, ସେ ପରିତ୍ରାଣ ପାଇବ; ମାତ୍ର ଯେ ବିଶ୍ୱାସ ନ କରଇ, ତାହାର ଦଣ୍ଡ ହେବ ।” ମାର୍କ ୧୬; ୧୫, ୧୬

---

ORISSA MISSION PRESS.—J. F. HILL.